# ପରିବାର

## ପାଠ୍ୟ ଓ ସହଚର






ବୁକ୍ସ ଏଣ୍ଡ ବୁକ୍ସ

# କବିବର ରାଧାନାଥ ରାୟ

# ଦ ର ବା ର

ପାଠ୍ୟ ଓ ସହଚର

ସମ୍ପାଦନା

ଅଧ୍ୟାପକ ମଣ୍ଡଳୀ

ବୁକସ୍ ଏଣ୍ଡ୍ ବୁକସ୍

ବିନୋଦବିହାରୀ, କଟକ-୨

# ସୂଚୀପତ୍ର

ଅନ୍ୟ କେତୋଟି ଉପାଦେୟ ପୁସ୍ତକ

# ଉଷାଭିଳାଷ

ପାଠ୍ୟ ଓ ସହଚର

A panel of professors presents.

Notes on

prelude to prose

Notes on

A Tale of two cities.

Notes on

Witness for prosecution.

ପ୍ରଥମ ବାର୍ଷିକ

ଗଦ୍ୟସଞ୍ଚୟନ ଆଲୋଚନା

କବିତା ସଞ୍ଚୟନ ଆଲୋଚନା

# ଦରବାର

## ପ୍ରାକ୍ ଭାଷା—

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟ ଆଲଙ୍କାରିକ ମହିମାରେ ମହିମାନ୍ୱିତ ହୋଇଥିଲେହେଁ କଠିନ ଶବ୍ଦ ବିନ୍ୟାସ ଏବଂ ଅଲଙ୍କାରର ଦୁର୍ବୋଧ୍ୟତାହେତୁ ସାଧାରଣ ଗଣ ଜୀବନକୁ ବିଶେଷଭାବରେ ସ୍ପର୍ଶକରି ପାରିନଥିଲା । କାବ୍ୟଥିଲା କେବଳ ସୁଧୀଜନମାନଙ୍କ ପାଇଁ ଅଭିପ୍ରେତ । ମାନବିକ ଭାବଚେତନାର କଷଟି ପଥରରେ ପରୀକ୍ଷା ନିରୀକ୍ଷା ନ ହୋଇ ପାଣ୍ଡିତ୍ୟର କଷଟି ପଥରରେ ଏହା ପରୀକ୍ଷା ହେଉଥିଲା । ରାମଚନ୍ଦ୍ର ଏବଂ ସୀତା ତଥା କୃଷ୍ଣଚନ୍ଦ୍ର ଏବଂ ଶ୍ରୀରାଧା ଓ ଗୋପାଙ୍ଗନା-ମାନଙ୍କର ପ୍ରଣୟ ପିଚ୍ଛିଳ ଜୀବନର ମିଳନ ବିରହ ଜନିତ ଶୋକୋଚ୍ଛ୍ୱାସର କରୁଣ କାହାଣୀକୁ ନେଇ ଏ ଯୁଗର କାବ୍ୟ ସୌଧ ନିର୍ମିତ ହୋଇଥିଲା । ଯେଉଁ କୋଡ଼ୋଡ଼ି କାଳ୍ପନିକ କାବ୍ୟ ଏ ଯୁଗରେ ରଚିତ ହୋଇଥିଲା ତାହା-ମଧ୍ୟ ଗତାନୁଗତିକ ଶୈଳୀରେ ରୂର୍ଚ୍ଛିମନ୍ତ ଏବଂ ଏ ଯୁଗୀୟ ପ୍ରତ୍ୟେକ କାବ୍ୟ ନର ନାରୀମାନଙ୍କର ଯୌନ ମିଳନର ଏକାନ୍ତ ଆଲେଖ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି କାବ୍ୟଗୁଡ଼ିକ ସୌନ୍ଦର୍ଯ୍ୟ ବିମଣ୍ଡିତ ହେଲେହେଁ ବୈଚିତ୍ର୍ୟହୀନ । ଜୀବନର ଜଟିଳ ଅନୁଭୂତି ଏହି କାବ୍ୟ କବିତାରୁ ଦେଖିବାକୁ ମିଳେ ନାହିଁ । ପୁନଶ୍ଚ ସଙ୍ଗୀତ ଯୁଗର କବିତା ମାନଙ୍କରେ ସୁମଧୁର ସଙ୍ଗୀତର ସ୍ୱର ଝଙ୍କୃତ ହୋଇଛି ସତ, ଏ ଯୁଗର କବିମାନସରେ ବୀଣାତନ୍ତ୍ରୀ ନିନାଦିତ ହୋଇଅଛି ସତ ମାତ୍ର ଏଥିରେ ବିପୁଳ ଜୀବନର ସୂକ୍ଷ୍ମ ଦ୍ୟୋତନା ନାହିଁ । ବୈଷ୍ଣବୀୟ ଧର୍ମଧାରଣାରେ ଏହା ବରଂ ଉର୍ଜ୍ଜ୍ୱଳ । ଉପେନ୍ଦ୍ର ଯୁଗୀୟ ପ୍ରାସାଦ ପରିବେଷ୍ଟିତ ଦରବାରୀ ସାହିତ୍ୟ ଏଯୁଗରେ ଯଦିଓ ପରିବର୍ତ୍ତିତ ହୋଇ ସାଧାରଣରେ ଆଦୃତ ହୋଇ ପାରିଥିଲା ତଥାପି ଏହା ଏକ ନିର୍ଦ୍ଦିଷ୍ଟ ଧରାବନ୍ଧା ଭାବ ଚେତନାରେ ଉଦ୍‌ବୁଦ୍ଧ ।

*

ଏହିଯୁଗର ଅବସାନ ଘଟେ କବିସୂର୍ଯ୍ୟ ବଳଦେବରଥ ଏବଂ ଯଦୁମଣି ମହାପାତ୍ରଙ୍କ ପରେ ପରେ। ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ କେବଳ ଯେ ଓଡ଼ିଶାର ଅଗଣିତ ଅସହାୟ ଅନ୍ନକ୍ଳିଷ୍ଟ ଜନତାକୁ ସବୁଦିନ ପାଇଁ ବିଦାୟ ଦେଇଥିଲା ତାହା ନୁହେଁ; ରୀତିଭାବାନୁମୋଦିତ ପ୍ରାଚୀନ ଶୈଳୀରେ କାବ୍ୟକବିତା ରଚନା କରିବା କ୍ଷେତ୍ରରେ ସତେ ଯେପରି ପୂର୍ଣ୍ଣଚ୍ଛେଦ ପକାଇ ଥିଲା। ମରଣର ତାଣ୍ଡବଲୀଳା ପରେ ପରେ ଓଡ଼ିଆ ଜାତିର ମାନସ ମୁକୁରରେ ଏକ ନୂତନ ଭାବଚେତନା ଜାଗ୍ରତ ହୋଇ ଉଠିଲା। ଏକ ବିରାଟ ଐତିହ୍ୟ ସମ୍ପନ୍ନ ଜାତିର ମୁଖରୁ ପୁଣି ଭାଷା ଛଡ଼ାଇ ନେବାକୁ ୧୮୬୮-୧୮୬୯ ମସିହାରେ ଯେଉଁ ଅପଚେଷ୍ଟା ହୋଇଥିଲା, ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ ''ବୋଲି ଅଣଓଡ଼ିଆମାନଙ୍କର ଯେଉଁ ଦମ୍ଭୋକ୍ତି ସୃଷ୍ଟି ହୋଇଥିଲା, ତାର ପ୍ରତିଦ୍ୱନ୍ଦ୍ୱିତାରେ ଏହି କଙ୍କାଳସାର ଜାତିର ମୁଖଗହ୍ୱରରେ ନୂତନ ଭାଷା ଝଙ୍କୃତ ହୋଇ ଉଠିଲା, ଏ ମୁମୂର୍ଷୁ ଜାତିହେଲା ପ୍ରାଣବାନ, ଗତିସ୍ମାନ୍। ୧୮୭୦ରୁ ଏଜାତିର ଭାଷା ଓ ସାହିତ୍ୟରେ ଆମୂଳ ପରିବର୍ତ୍ତନ ଦେଖାଦେଲା। ୧୮୭୦ରୁ ୧୮୮୦ ମସିହାହିଁ ଏଜାତିର ନୂତନ ସାହିତ୍ୟର ନିର୍ମାଣକାଳ। ପାଠ୍ୟ ପୁସ୍ତକର ବିକାଶ ସଙ୍ଗେ ସଙ୍ଗେ ଆଧୁନିକ ଚିନ୍ତା ଚେତନା ଏ ଜାତିର ସାହିତ୍ୟିକମାନଙ୍କୁ ଉଦ୍‌ବୁଦ୍ଧ କଲା। ଫଳରେ ଜନ୍ମନେଲେ ଆଧୁନିକ ସାହିତ୍ୟର ସ୍ରଷ୍ଟା ଓ ଭଗୀରଥ କବିବର ରାଧାନାଥ ରାୟ। ବ୍ୟାସକବି ଫକୀରମୋହନ ସେନାପତି ଓ ବ୍ରହ୍ମର୍ଷି ମଧୁସୂଦନ ରାଓ ସତ୍ୟ ଓ ଶିବର ସନ୍ଧାନ ଦେଲେ ଓଡ଼ିଆସାହିତ୍ୟରେ। ଓଡ଼ିଆ ସାହିତ୍ୟହେଲା ଜୀବନ୍ତ। ସମସାମୟିକ ଅନ୍ୟାନ୍ୟସାହିତ୍ୟ ସହିତ ଏହା ସମକକ୍ଷ ଭାବରେ ଗତିକରିବାକୁ ଲାଗିଲା ମୋଟ ଉପରେ କବିବର ରାଧାନାଥହିଁ ଏଯୁଗର ପ୍ରଥମ ଏବଂ ସାର୍ଥକ କବି ଯେକି ସମୟର ପ୍ରାଣସ୍ପନ୍ଦନକୁ ଯଥାର୍ଥଭାବରେ ହୃଦୟଙ୍ଗମ କରି କାବ୍ୟକବିତାରେ ସୁନ୍ଦର ଭାବରେ ବର୍ଣ୍ଣନା କରିପାରିଛନ୍ତି। ସମୟର ପ୍ରାଣସ୍ପନ୍ଦନ ସହିତ ବ୍ୟକ୍ତି ଜୀବନର ଚିତ୍ତ ସଙ୍ଘର୍ଷହିଁ ରାଧାନାଥ ସାହିତ୍ୟର ପ୍ରାଣ ଉତ୍ସ କହିଲେ ଅତ୍ୟୁକ୍ତି ହେବନାହିଁ। ସେଥିଲେ ବହୁ ଶାସ୍ତ୍ରଦର୍ଶୀ। ଇଂରାଜୀ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ। ସଂସ୍କୃତ ସାହିତ୍ୟରେ ମଧ୍ୟ ତାଙ୍କର ଥିଲା ଗଭୀର ପ୍ରବେଶ। ତେଣୁ ବିଭିନ୍ନ ସାହିତ୍ୟରୁ ଭାବଧାରା ଗ୍ରହଣ କରି ସେ ତାଙ୍କର କାବ୍ୟକବିତାକୁ ମନୋଜ୍ଞ କରିବାକୁ ଚେଷ୍ଟା କରିଛନ୍ତି। ତାଙ୍କର

ସୌନ୍ଦର୍ଯ୍ୟ ପିପାସୁ ଦୃଷ୍ଟିକୋଣ ବିଭିନ୍ନ ସାହିତ୍ୟରୁ ମଧୁଆହରଣ କରିଛି ମାତ୍ର ସେ ତାଙ୍କର ପ୍ରତିଭାବଳରେ ସେସବୁକୁ ନିଜସ୍ୱକରଣ କରି ନୂତନ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ କାବ୍ୟରେ ପ୍ରକୃତିର ଜୀବନ୍ତ ଚିତ୍ର ଯେପରି ବର୍ଣ୍ଣିତ ହୋଇଛି ସେହିପରି ବର୍ଣ୍ଣିତ ହୋଇଛି ଉଦାରମାନବିକ ଚେତନା । ଭାଷାର ସାବଲୀଳତାରେ, ବର୍ଣ୍ଣନା ବିଳାସର କମନୀୟତାରେ, ପ୍ରାକୃତିକ ବର୍ଣ୍ଣନାର ହିଲ୍ଲୋଳ ବିଳାସରେ, ଚରିତ୍ର ଚିତ୍ରଣର ମନୋଜ୍ଞତାରେ, ମାନବିକ ଭାବଚେତନାର ବାସ୍ତବ ନିର୍ଯ୍ୟାସରେ, ଇତିହାସ ଓ ପୁରାଣର କଥାବସ୍ତୁର ରୂପଚିତ୍ରଣରେ, ଏବଂ ସର୍ବୋପରି ଜୀବନପ୍ରତି ରାଧାନାଥଙ୍କର ଦୁଃଖାତ୍ମକ ଦୃଷ୍ଟିକୋଣରେ ଓ ତତ୍କାଳୀନ ସାମାଜିକ, ରାଜନୀତିକ ତଥା ପ୍ରଶାସନିକ ବିଧିବ୍ୟବସ୍ଥା ପ୍ରତି ବ୍ୟଙ୍ଗାତ୍ମକ ବର୍ଣ୍ଣନାରେ ରାଧାନାଥଙ୍କ ସାହିତ୍ୟ ଯେ ମହିମାମଣ୍ଡିତ ଏଥିରେ ସନ୍ଦେହନାହିଁ ।

## ସଂକ୍ଷିପ୍ତ ଜୀବନୀ—

ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା କବିବର ରାଧାନାଥ ରାୟଙ୍କର ବ୍ୟକ୍ତିଗତ ଜୀବନ ବହୁ ବୈଚିତ୍ର୍ୟବିମଣ୍ଡିତ । ଜନ୍ମରୁ ମୃତ୍ୟୁପର୍ଯ୍ୟନ୍ତ ଜୀବନର ଦାବ-ଦହନ ମଧ୍ୟରେ ଗତିକରି ଯେଉଁ ବ୍ୟାପକ ଅନୁଭୂତି ଲାଭ କରିଥିଲେ ତାହାକୁ ସେ ତାଙ୍କର ବିଭିନ୍ନ କାବ୍ୟ କବିତାରେ ମନୋଜ୍ଞ ଭାବରେ ପ୍ରକାଶ କରିଛନ୍ତି, । ଏହି ମହାନ୍ ପ୍ରତିଭାଶାଳୀ କବିଙ୍କର ଜନ୍ମହୁଏ ୧୮୪୮ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ କେଦାରପୁର ଗ୍ରାମରେ । ଜନକ ସୁନ୍ଦର ନାରାୟଣଙ୍କ ଯତ୍ନରେ ସେ ନିଜଗୃହରେ ବସିଥିବା ବିଦ୍ୟାଳୟରେ ଶିକ୍ଷାଲାଭ କରିଥିଲେ । ବାଲ୍ୟଶିକ୍ଷା ସମାପ୍ତି ପରେ ସେ ସେଇଠାରେ ଅନୁଷ୍ଠିତ ହୋଇଥିବା ଭର୍ଣ୍ଣାକୁଲାର ସ୍କୁଲରେ ଅଧ୍ୟୟନ କଲେ । ମାତ୍ର ଏହି ସମୟରେ ସେ ରୋଗାକ୍ରାନ୍ତ ହେବାରୁ ଚିକିତ୍ସା ନିମନ୍ତେ ତାଙ୍କୁ ତାଙ୍କ ପିତା ବାଲେଶ୍ୱର ନେଇଗଲେ । ସେଠାରେ ତାଙ୍କର ଚିକିତ୍ସା ଶେଷ ହେବାପରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ଅଧ୍ୟୟନ କଲେ । ୧୮୫୮ ମସିହାରୁ ୧୮୬୩ ମସିହା ପର୍ଯ୍ୟନ୍ତ ସେ ଏହି ବିଦ୍ୟାଳୟରେ ଅଧ୍ୟୟନ କରି ଶିକ୍ଷକମାନଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ପ୍ରବେଶିକା ପରୀକ୍ଷାରେ

ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ମାସିକ ଟ୧୪ ( ବୃତ୍ତିରେ କଲିକତା ପ୍ରେସିଡ଼େନସି କଲେଜକୁ ଏଫ.ଏ. ପଢ଼ିବା ପାଇଁ ଗଲେ, ମାତ୍ର ପୁନରାୟ ସ୍ୱାସ୍ଥ୍ୟ ହାନି ଏବଂ ଆର୍ଥିକ ଦୁରବସ୍ଥାହେତୁ ସେ ବାଲେଶ୍ୱର ଫେରି ଆସିଲେ ।

୧୮୬୪ସାଲ ମଇ ମାସ ୧ ତାରିଖରେ ରାଧାନାଥ ମାସିକ ଟ୬୦ ବେତନରେ ବାଲେଶ୍ୱର ଜିଲାସ୍କୁଲରେ ତୃତୀୟ ଶିକ୍ଷକ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ଏହିଠାରୁ ତାଙ୍କର କର୍ମମୟ ଜୀବନ ଆରମ୍ଭହେଲା, ୧୮୬୯ସାଲ ଜାନୁଆରୀ ମାସ ୧୪ତାରିଖରେ ସେ ପୁରୀ ଜିଲାସ୍କୁଲରେ ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତ ହେଲେ । ଏହି ସମୟରେ ଏଫ୍ ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣହେଲେ । ପୁନଶ୍ଚ ୧୮୭୨ସାଲ ଜାନୁଆରୀ ମାସ୧୦ ତାରିଖରେ ସେ ବାଙ୍କୁଡ଼ା ଜିଲାସ୍କୁଲରେ ଦ୍ୱିତୀୟ ଶିକ୍ଷକଭାବରେ ଯୋଗଦେଲେ । ତାଙ୍କର କର୍ତ୍ତବ୍ୟ ପରାୟଣତା ହେତୁ ତାଙ୍କୁ ୧୮୭୨ସାଲ ଜୁଲାଇ ମାସ ୨୬ତାରିଖରେ ବାଲେଶ୍ୱର ଜିଲାର ସ୍କୁଲ ଡେପୁଟି ଇନ୍ସପେକ୍ଟର ରୂପେ ନିଯୁକ୍ତ କରାଗଲା । ସେ ଏହି ଜିଲାରେ ଦୀର୍ଘ ପାଞ୍ଚବର୍ଷ କାଳ ସୁଚାରୁରୂପେ କାର୍ଯ୍ୟକରି ୧୮୭୭ ସାଲ ନଭେମ୍ବର ମାସ ୨୬ତାରିଖରେ ଓଡ଼ିଶାର ସ୍କୁଲ ସମୂହର ଜଏଣ୍ଟ ଇନ୍ସପେକ୍ଟର ପଦକୁ ଉନ୍ନୀତ ହେଲେ ଏବଂ ତାଙ୍କର କାର୍ଯ୍ୟ ଦକ୍ଷତାହେତୁ ୧୮୯୨ସାଲ ଜୁନ୍ ମାସ ୨୧ତାରିଖରେ ନୂତନ କରି ସୃଷ୍ଟି ହୋଇଥିବା ଓଡ଼ିଶାର ସ୍କୁଲ ସମୂହର ଇନ୍ସପେକ୍ଟର ପଦରେ ଅସ୍ଥାୟୀ ଭାବରେ କାର୍ଯ୍ୟକଲେ ଓ ୧୮୯୨ ସାଲ ଡ଼ିସେମ୍ବର ୧ତାରିଖରେ ସେ ଏହି ପଦରେ ସ୍ଥାୟୀ ହେଲେ । ବାଲ୍ୟ ଓ ଛାତ୍ର ଜୀବନ ତାଙ୍କରଥିଲା ଦୁଃଖଦ ଏବଂ ଅଭାବଗ୍ରସ୍ତ । କିନ୍ତୁ ସେ ଥିଲେ ମେଧାବୀ ତୃତୀୟ ଶିକ୍ଷକ ଭାବରେ ସେ କାର୍ଯ୍ୟ ଭାର ଗ୍ରହଣକରି ନିଜର କର୍ତ୍ତବ୍ୟନିଷ୍ଠା ଓ ବ୍ୟକ୍ତିଗତ ଅଧ୍ୟବସାୟ ହେତୁ ଓଡ଼ିଶା ସ୍କୁଲ ସମୂହର ଇନ୍ସପେକ୍ଟର ଭାବରେ ନିଯୁକ୍ତ ହୋଇ ନିଜ ବ୍ୟକ୍ତିତ୍ୱର ପରାକାଷ୍ଠା ଦେଖାଇଅଛନ୍ତି ।

## ରାଧାନାଥଙ୍କର ସାହିତ୍ୟିକ ଜୀବନ:—

ରାଧନାଥଙ୍କର ସାହିତ୍ୟିକ ଜୀବନ ବହୁ ବିଚିତ୍ର ବର୍ଣ୍ଣିଳ ଭାବଧାରାରେ ଅନୁରଂଜିତ । ୧୮୬୮ ମସିହାଠାରୁ ଆରମ୍ଭକରି ୧୯୧୧ ମସିହା ପର୍ଯ୍ୟନ୍ତ ସେ

ନିରବଚ୍ଛିନ୍ନ ଭାବରେ ସାହିତ୍ୟ ସାଧନା କରି ଅଛନ୍ତି । ସାହିତ୍ୟିକ ଜୀବନର ପ୍ରଥମ ପର୍ଯ୍ୟାୟରେ ସେ ବଙ୍ଗଳାରେ କବିତା ରଚନା କରିଛନ୍ତି । ମାତ୍ର ପରେ ସେ ଭୂଦେବ ମୁଖୋପାଧ୍ୟାୟଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଓଡ଼ିଆରେ କାବ୍ୟ କବିତା ରଚନା କରିବାରେ ମନୋନିବେଶ କରିଥିଲେ । ସେ ପ୍ରଥମେ ପୁରାତନ ବିଷୟକୁ ନେଇ କାବ୍ୟ ରଚନା କରିଥିଲେ । ମାତ୍ର ଭୂଦେବ ବାବୁ ତାଙ୍କୁ ଉପଦେଶ ଦେଇଥିଲେ "ପୁରାତନ ବିଷୟ ଯେନ ଶଙ୍କର ଓ ଭ୍ରମର ଅଯଥା ବିନିଯୋଗ କର କାହିଁକି ?...ତୁମେ ନୂଆ ଗଢିବାକୁ ଚେଷ୍ଟାକରିବ । ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତା ଧାତ୍ରୀ (Meet nurse for a poetic child) । ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ, ନୂଆ ଗଢିବାରେ ଉପାଦାନ ଯଥେଷ୍ଟ ରହିଛି ।" ରାଧାନାଥ ଭୂଦେବ ବାବୁଙ୍କ ଉପଦେଶ ମାନି ଓଡ଼ିଆରେ କାବ୍ୟ କବିତା ରଚନା କଲେ ଓ ଓଡ଼ିଶାର କମନୀୟ ପ୍ରକୃତିର ଚାରୁ ଆଲେଖ୍ୟ ପ୍ରଦାନ କଲେ । ମାତ୍ର ସେ ନୂତନ କିଛି ସୃଷ୍ଟି କରିବାକୁ ଅକ୍ଷମ ବୋଲି ଭୂଦେବ ବାବୁଙ୍କୁ କହିଥିଲେ "ନୂଆ ଘଟନା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ," ( ରାଧାନାଥ ଜୀବନୀ ପୃ ୯୦୨ ) । ସେ ଯାହା ହେଉନା କାହିଁକି କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟରୁ କଥାବସ୍ତୁ ଆହରଣ କରି ନିଜର ମୌଳିକ ପ୍ରତିଭାରେ ପ୍ରତିଭାନ୍ୱିତ କରି ନୂତନ ଭାବରେ କାବ୍ୟ କବିତା ରଚନା କରି ଯାଇଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାର ସମନ୍ୱୟକାରୀ ଭାବରେ ଓଡ଼ିଆ ସାହିତ୍ୟରେ ସେ ପ୍ରତିଷ୍ଠା ଅର୍ଜ୍ଜନ କରିଛନ୍ତି । ଶ୍ରେଷ୍ଠକବିର ଲକ୍ଷଣ ନିରୂପଣ କରିବାକୁ ଯାଇ T.S Eliot ତେଣୁ ଯଥାର୍ଥରେ ଲେଖିଛନ୍ତି "One of the surest ot tests is the way in which a poet borrows, Immature poets immitate, mature poets steal, bad poets deface what they take ; and good poets make it into something better, or at least, something different." କବି ରାଧାନାଥ ଏହିଦୃଷ୍ଟିରୁ ଜଣେ ପ୍ରକୃତ କବି । ସେ ଆହରଣ

କରିଛନ୍ତି ସତ ମାତ୍ର ନିଜର ମୌଳିକ ପ୍ରତିଭା ଦ୍ୱାରା ତାକୁ ମହିମାମଣ୍ଡିତ କରିଛନ୍ତି । ଗ୍ରୀକ୍ ଓ ଇଂରାଜୀ ସାହିତ୍ୟର ସୁବର୍ଣ୍ଣ ଗନ୍ତାଘରୁ ବହୁ ମୂଲ୍ୟବାନ ଉପାଦାନ ଗ୍ରହଣ କରି ଉତ୍କଳୀୟ ପରିପ୍ରେକ୍ଷୀରେ ସମନ୍ୱୟ କରି କମନୀୟ ଭାବରେ ବର୍ଣ୍ଣନା କରିଛନ୍ତି ।

ପାଠ୍ୟ ପୁସ୍ତକର ରଚକ ଭାବରେ ସେ ଯେତିକି ଖ୍ୟାତି ପ୍ରାଥମିକ ଜୀବନରେ ଅର୍ଜନ କରିଥିଲେ ପରବର୍ତ୍ତୀ କାଳରେ ଜଣେ କବିଭାବରେ ଯଥେଷ୍ଟ ପ୍ରତିଷ୍ଠା ଅର୍ଜନ କରି ପାରିଥିଲେ । ଜଣେ ସାର୍ଥକ ଅନୁବାଦକ ଭାବରେ ତାଙ୍କୁ 'ମେଘଦୂତ' ଯଥୋଚିତ ସମ୍ମାନ ଦେଇଥାଏ । ଏଥିରେ କବିଙ୍କର ମୌଳିକତା ପ୍ରତିଛନ୍ଦେ ଛନ୍ଦେ ବିଦ୍ୟମାନ । ଗଦ୍ୟଲେଖକ ଭାବରେ 'ଇତାଲୀୟ ଯୁବା' ମଧ୍ୟ କବିଙ୍କୁ କମ୍ ସମ୍ମାନ ଦେଇନାହିଁ । କିନ୍ତୁ କବି ରାଧାନାଥଙ୍କୁ ତାଙ୍କର 'କେଦାରଗୌରୀ' ଚନ୍ଦ୍ରଭାଗା, ନନ୍ଦିକେଶରୀ, ଉଷା, ପାର୍ବତୀ, ଚିଲିକା, ମହାଯାତ୍ରା, ଯଯାତିକେଶରୀ, ତୁଳସୀ ସ୍ତବକ, ଉର୍ବଶୀ, ଦରବାର ଆଦି କାବ୍ୟ କବିତା ଗୁଡ଼ିକ ମହାନ୍ କବିତ୍ୱ ଗୌରବରେ ଅଭିନନ୍ଦିତ କରିଅଛି । କେଦାରଗୌରୀ, ଉଷା, ପାର୍ବତୀ, ଚନ୍ଦ୍ରଭାଗା ଆଦିକାବ୍ୟଗୁଡ଼ିକର କଥାବସ୍ତୁ ଗ୍ରୀକ୍‌ସାହିତ୍ୟରୁ ଆହରଣ କରାଯାଇ ଥିବାରୁ ସମାଲୋଚକମାନେ ତାଙ୍କୁ ସମାଲୋଚନାରେ କ୍ଷତବିକ୍ଷତ କରିପକାଇ ଥିଲେ । ବିଶେଷକରି କେଦାରଗୌରୀ ଏବଂ ପାର୍ବତୀ କାବ୍ୟରେ ସେ ଉତ୍କଳୀୟ ସଂସ୍କୃତି ଓ ଐତିହ୍ୟପ୍ରତି ଅବମାନନା କରିଥିବାରୁ ତାଙ୍କୁ କଠୋର ସମାଲୋଚନାର ସମ୍ମୁଖୀନ ହେବାକୁ ହୋଇଥିଲା । ୧୮୮୭ ସାଲ ପରେ ରାଧାନାଥଙ୍କୁ କ୍ରମେ ନିର୍ମମ ଭାବରେ ସମାଲୋଚନା କରାଗଲା । ଏପରି କି ୧୮୯୩-୯୪ରେ ଇନ୍ଦ୍ରଧନୁ ଓ ବିଜୁଳି ବିବାଦ ରାଧାନାଥଙ୍କ ପ୍ରତିଭାର ଘୋର ପରୀକ୍ଷାର କାଳ ଭାବରେ ଦେଖାଦେଇଥିଲା । ପରବର୍ତ୍ତୀକାଳରେ ସତ୍ୟବାଦୀଗୋଷ୍ଠୀର ବରେଣ୍ୟ ସାଧକ ଓ କବି ନୀଳକଣ୍ଠ ଦାଶ ମଧ୍ୟ ରାଧାନାଥଙ୍କୁ ସମାଲୋଚନା କରି କୋଣାର୍କେ' କାବ୍ୟରେ ଲେଖିଥିଲେ । "କବିଙ୍କି ସୁମରି ବିରାଗେ ମୁହିଁ ଫେରାଅ ପଛେ ।" ଭଂଜ ସପକ୍ଷବାଦୀ ଏବଂ ରାଧାନାଥ ସପକ୍ଷବାଦୀଙ୍କ ମଧ୍ୟରେ କ୍ରମେ ବାଦାନୁବାଦ ତିକ୍ତ ଆକାର ଧାରଣ କରିବାରୁ ନିଜେ ରାଧାନାଥ ୧୮୯୪ ସାଲ ଫେବୃୟାରୀ ୫ ତାରିଖରେ ଏକ ପତ୍ରରେ ଉଲ୍ଲେଖ କରିଥିଲେ, "ଭଂଜକବିଙ୍କୁ ମୁଁ ମୋହର ଏକତର ଶିକ୍ଷାଗୁରୁ

ଜ୍ଞାନକର ଆବାଲ୍ୟ ଭକ୍ତି କରି ଆସୁଅଛି । ମୁଁ ଯେ କେବଳ ବାହ୍ୟତଃ ଭକ୍ତି ଦେଖାଇ ଅଛି ତାହାନୁହେଁ, କାର୍ଯ୍ୟତଃ ଭକ୍ତି ଦେଖାଇବାର ଅନେକ ନିଦର୍ଶନ ମୋହର ନିଜପ୍ରକାଶିତ ପଦ୍ୟରୁ ସଂକଳିତ ହୋଇପାରେ । ମୋହଠାରୁ ଭକ୍ତିଙ୍କର ଅଧିକ ଅନୁକାଙ୍କ୍ଷି ପଦ୍ୟ ଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ । '' ଏଥିରୁ ମନେ ହୁଏ ରାଧାନାଥ ଜଣେ ଉଦାରମନୋଭାବ ସଂପନ୍ନ କବିଥିଲେ । ସମାଲୋଚନାରେ ସେ କ୍ଷତ ବିକ୍ଷତ ହୋଇଥିଲେ ହେଁ ଉଦାର ଭାବରେ ସେ ସମସ୍ତ ଗ୍ରହଣ କରିଛନ୍ତି । ଜୀବଦଶା ମଧ୍ୟରେ ସେ ଯଥୋଚିତ ସମ୍ମାନ ପାଇ ନଥିଲେହେଁ ମୃତ୍ୟୁପରେ ଗଭୀର ସମ୍ମାନ ଲାଭ କରିଛନ୍ତି । ଉତ୍କଳୀୟ ସଂସ୍କୃତି ଓ ଜାତୀୟତାକୁ ଅବମାନନା କରିଛନ୍ତିବୋଲି ତାଙ୍କୁ ସମାଲୋଚନା କରାଯାଇଥିଲେହେଁ ତାଙ୍କର କବିତ୍ୱର ଉଚିତ ମୂଲ୍ୟାୟନ ହୋଇ ପାରିନାହିଁ । ପରବର୍ତ୍ତୀକାଳରେ ରାଧାନାଥଙ୍କର କବିତ୍ୱର ମୂଲ୍ୟାୟନ ହେବା ସଙ୍ଗେ ସଙ୍ଗେ ତାଙ୍କର ପ୍ରତିଭାର ପ୍ରକୃତ ପରିଚୟ ମିଳିଅଛି । ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା ଭାବରେ ସେ ସମ୍ମାନ ଲାଭ କରିଛନ୍ତି । ଏହି ମହାନ୍ ପ୍ରତିଭାର ମୂକସାକ୍ଷୀରୂପେ ଅସମ୍ପୂର୍ଣ୍ଣ ମହାକାବ୍ୟ 'ମହାଯାତ୍ରା' ୧୮୯୬ ସାଲରେ ଆତ୍ମପ୍ରକାଶକରି ବିଦ୍ୟମାନରହିଛି ।

ଜୀବନକାଳ ମଧ୍ୟରେ ରାଧାନାଥ ବହୁ ସମ୍ମାନର ଅଧିକାରୀ ହୋଇଥିଲେ । ସ୍କୁଲଶିକ୍ଷକରୁ ଶିକ୍ଷାବିଭାଗର ସର୍ବୋଚ୍ଚ କର୍ମକର୍ତ୍ତା ରୂପେ ନିଯୁକ୍ତ ହୋଇ ପାରିଥିଲେ । କବିଭାବରେ ସେ ବିଭିନ୍ନ ରାଜନ୍ୟମଣ୍ଡଳୀଦ୍ୱାରା ସମ୍ମାନିତ ହୋଇଥିଲେ । ନିଜର କର୍ମନିଷ୍ଠା ହେତୁ ଇଂରେଜ ସରକାରଙ୍କଦ୍ୱାରା ''ରାୟବାହାଦୂର'' ଉପାଧିରେ ଭୂଷିତ ହୋଇଥିଲେ । ନିଜେ ଜୀବନକାଳ ମଧ୍ୟରେ ବାରମ୍ବାର ରୋଗାକ୍ରାନ୍ତ ହେବାହେତୁ ଓ ପୁତ୍ର ଶଶୀଭୂଷଣଙ୍କର ସ୍ୱାସ୍ଥ୍ୟ ହେତୁ ସେ ଶାନ୍ତିଲାଭ କରି ନଥିଲେ । ଏହାବ୍ୟତୀତ କର୍ମମୟ ଜୀବନରେ ନାନାଦି ଘାତ ପ୍ରତିଘାତ ମଧ୍ୟରେ ଜୀବନ କଟାଇଥିଲେ । ତାଙ୍କର ଜୀବନ ଥିଲା ଦୁଃଖଦ ଏବଂ ଅଶାନ୍ତିଳ । ରାଧାନାଥଙ୍କ ଦୁଃଖମୟ ଜୀବନର କରୁଣ ନିର୍ଯ୍ୟାସ ତାଙ୍କର ବିଭିନ୍ନ କାବ୍ୟକବିତାରେ ଦେଖିବାକୁ ମିଳିଥାଏ । ବିଶେଷକରି ଚିଲିକା ଏବଂ ଦରବାର କବିଜୀବନର କରୁଣ ଆତ୍ମଲିପି ଭାବରେ ସ୍ୱୀକୃତ ହୋଇଛି । ଚିଲିକା କାବ୍ୟରେ ତେଣୁ ସେ ଲେଖିଛନ୍ତି ''ଚିରହାହାମୟ ଏ

ଗ୍ରର ଜୀବନ, ଜୀବନ ନୁହଁଇ ଜୀବନ୍ତ ମରଣ'' କେବଳ ଏତିକ ନୁହେଁ ସେ ନିଜକୁ ଦୁଃଖ ଗୁରୁଙ୍କର ପଞ୍ଚଶିଷ୍ୟ ଭାବରେ ଗ୍ରହଣ କରିଛନ୍ତି । ଏହି ମହାନ୍ କବିଙ୍କର ଦୁଃଖମୟ ଜୀବନର ଅବସାନ ହେଲା ୧୯୦୮ ସାଲ ଅପ୍ରେଲ ୧୬ତାରିଖ ରାତି ଦ୍ୱିପ୍ରହର ସମୟରେ । ତାଙ୍କର ମର ଶରୀର ବିଦାୟ ନେଇ ଯାଇଛି ସତ ମାତ୍ର ତାଙ୍କର ଅମର କବିକୃତି ସମୟର ରଥଚକ୍ର ତଳେ ନିଷ୍ପେଷିତ ହୋଇ ଯାଇ ନାହିଁ । କାଳବକ୍ଷରେ ସତେଯେପରି ସେସବୁ ଦେଦୀପ୍ୟମାନ । ଏଥିପାଇଁ ରାଧାନାଥ ମରି ମଧ୍ୟ ଅମର ।

## ରାଧାନାଥ ଯୁଗର ବୈଶିଷ୍ଟ୍ୟ—

ରାଧାନାଥଯୁଗର ଓଡ଼ିଆ ସାହିତ୍ୟ ବହୁ ବୈଚିତ୍ର୍ୟ ବିମଣ୍ଡିତ । ପ୍ରାଚ୍ୟ ପାଶ୍ଚାତ୍ୟ ଚିନ୍ତା ସମନ୍ୱୟରେ ଏହି ଯୁଗର ସାହିତ୍ୟ ଋଦ୍ଧିମନ୍ତ । ରାଧାନାଥଙ୍କ ସାହିତ୍ୟ ସଂପୂର୍ଣ୍ଣଭାବରେ ପ୍ରାଚୀନତାକୁ ପରିହାର କରିନାହିଁ ବା ସଂପୂର୍ଣ୍ଣରୂପେ ନୂତନତାକୁ ଗ୍ରହଣ କରିନାହିଁ । ଏକ କଥାରେ କହିବାକୁ ଗଲେ ରାଧାନାଥଙ୍କ ସାହିତ୍ୟ ପ୍ରଚୀନ ଏବଂ ଆଧୁନିକତାର ସଂଯୋଗ ସେତୁ । ନଅଙ୍କ ଦୁର୍ଭିକ୍ଷର କରାଳ ନୃତ୍ୟ ଓ ଭାଷାବିଲୋପ ଆନ୍ଦୋଳନର ଅପଚେଷ୍ଟା ପରେ ପରେ ଏହି ଯୁଗର ସୃଷ୍ଟି ହୁଏ । କବିବର ରାଧାନାଥପ୍ରକୃତି ସୌନ୍ଦର୍ଯ୍ୟର ଉପାସକ ଭାବରେ କାବ୍ୟ କବିତା ରଚନାକଲେ । ପ୍ରକୃତିର ବୈଚିତ୍ର୍ୟକୁ ସୂକ୍ଷ୍ମତୁଳିକା ସାହାଯ୍ୟରେ ଅନୁରଞ୍ଜିତ କଲେ । ପ୍ରକୃତିହେଲା ତାଙ୍କହସ୍ତରେ ଚଳ ଚଞ୍ଚଳା, ସ୍ଫୁର୍ତ୍ତିମୟୀ । ସେ ଆଉ ନିର୍ବାକ୍ ନୁହେଁ, ଜଡ଼ନୁହେଁ, ନିର୍ବେଦ ନୁହେଁ । ନୂତନ ଭାବଚେତନା ସୃଷ୍ଟି ହେଲା ପ୍ରକୃତି ବର୍ଣ୍ଣନାରେ । ଫକୀର ମୋହନ ସେନାପତି ଉପନ୍ୟାସ ଓ ଗଳ୍ପରଚନା କରି ଓଡ଼ିଆ ସାହିତ୍ୟରେ ନୂତନ ଦିଗନ୍ତର ସୂଚନା ଦେଲେ । ଗାଁଗହଳରେ ଯେଉଁ ଅବହେଳିତ ଚରିତ୍ର ସାହିତ୍ୟରେ ସ୍ଥାନ ପାଇ ନଥିଲା ସେସବୁକୁ ସେ ଯଥାର୍ଥଭାବରେ ବର୍ଣ୍ଣନା କଲେ । ସତ୍ୟ ଓ ବାସ୍ତବତାର ଉପାସକ ଭାବରେ ସେ ପ୍ରତିଷ୍ଠା ଅର୍ଜ୍ଜନ କଲେ । ତାଙ୍କ ସାହିତ୍ୟ ହେଉଛି ଓଡ଼ିଆ ଜାତିର ସମସ୍ୟା, ଓଡ଼ିଆ ଜାତିର କଥା ଓ କାହାଣୀ । ଭକ୍ତକବି ମଧୁସୂଦନ ରାଓ ତାଙ୍କର ସାହିତ୍ୟ ମାଧ୍ୟମରେ ମଙ୍ଗଳମୟ ଭଗବାନଙ୍କର ସନ୍ଧାନ ଦେଲେ । ପ୍ରକୃତିର

ଛନ୍ଦେ ଛନ୍ଦେ ସେ ସେହି ଅମୃତମୟ ମଙ୍ଗଳମୟ ସତ୍ୟଶିବ ସୁନ୍ଦର ଭଗବାନଙ୍କର ବାଣୀ ଫୁଟାଇଲେ । ଏଯୁଗର ଅନ୍ୟତମ ସାଧକ ଭାବରେ କବି ଗଙ୍ଗାଧର, ନାଟ୍ୟକାର ରାମଶଙ୍କର ରାୟ, ଔପନ୍ୟାସିକ ଜଗନ୍ମୋହନ ଲାଲ, ଗୋପାଳ ବଲ୍ଲଭଦାସ, ପଲ୍ଲୀକବି ନନ୍ଦକିଶୋର, ସମାଲୋଚକ ଓ ସଂପାଦକ ବିଶ୍ୱନାଥକର ପ୍ରଭୃତି ଖ୍ୟାତି ଅର୍ଜନ କରିଅଛନ୍ତି ।

## (କ) ବିଷୟ ନିର୍ବାଚନରେ ମନୁଷ୍ୟତା—

ରାଧାନାଥଯୁଗ ପୂର୍ବରୁ ଓଡ଼ିଆ ସାହିତ୍ୟରେ ବିଷୟ ନିର୍ବାଚନ ଗତାନୁଗତିକ ଥିଲା । ରାଧାକୃଷ୍ଣ, ରାମସୀତା, ଓ ରାଜାରାଣୀମାନଙ୍କର ବିରହ ମିଳନ ଜନିତ କାହାଣୀକୁ ନେଇ କାବ୍ୟକବିତା ରଚନା କରାଯାଉଥିଲା । କଳ୍ପନିକ କାବ୍ୟର ବିଷୟବସ୍ତୁ ମଧ୍ୟ ସେହି ଏକାଧରଣର । ଏହିସବୁ କଥାବସ୍ତୁରେ ବୈଚିତ୍ର୍ୟ ନାହିଁ । ଜନ୍ମ, ବୃଦ୍ଧି, ଯୌବନ, ପ୍ରେମ, ବିରହ ଓ ମିଳନହିଁ ସେସବୁ କାବ୍ୟର ପ୍ରଧାନ କଥା । ବିଶେଷକରି ଦୈହିକ ମିଳନ ଜନିତ ରତିରଣ ପ୍ରଚୁର ହେଉଛି ରୀତିଯୁଗୀୟ କାବ୍ୟର ପ୍ରାଧାନ ବୈଶିଷ୍ଟ୍ୟ । ମାତ୍ର ରାଧାନାଧ ଯୁଗୀୟ କାବ୍ୟକବିତାର ବିଷୟ ବସ୍ତୁ ସମସ ମନୁଷ୍ଟିକ ଚିନ୍ତା ଓ ଚେତନାରୁ ଉଦ୍‌ବୁଦ୍ଧ । ଏହା ଯଦିଓ ପ୍ରେମ ଭିତ୍ତିକ ମାତ୍ର ଏହା ବୈଚିତ୍ର୍ୟପୂର୍ଣ୍ଣ । ଦେଶପ୍ରେମ, ଜାତୀୟଭାବ, ଗଣଚେତନା ପ୍ରଭୃତି ଏଯୁଗୀୟ କାବ୍ୟ କବିତାରେ ଅନୁରଣିତ ହେଲା । ପୂର୍ବ ବୈଷ୍ଣବ ଓ ଭକ୍ତ ଯୁଗରେ ବିଷୟ ବସ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ ଗତିକରୁଥିଲା । ନାୟକ ନାୟିକାଙ୍କର ବାଲ୍ୟ ଯୌବନ ପୌରୁଷ ଲୀଳାର ବର୍ଣ୍ଣନା, ପ୍ରେମ, ବିରହ, ମିଳନର ବର୍ଣ୍ଣନା ଇତ୍ୟାଦି ଗତାନୁଗତିକ ଥିଲା । କେବଳ ରାଜପରିସରକୁ ନେଇ ସେ ସାହିତ୍ୟର ସୃଷ୍ଟି । ସାଧାରଣ ଜନତାର କାହାଣୀ ସେଥିରେ ନାହିଁ । ମାତ୍ର ରାଧାନାଥ ଯୁଗୀୟ ସାହିତ୍ୟରେ ସମାଜର ବିଭିନ୍ନ ଶ୍ରେଣୀର ଚିତ୍ର ଫୁଟିଉଠିଲା । ବିଶେଷ କରି ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ଏସାହିତ୍ୟରେ ବର୍ଣ୍ଣିତ ହେଲା । ଦରିଦ୍ର ଓ ଧନୀ, ପାପୀ ଓ ଧାର୍ମିକ, ବ୍ୟକ୍ତିମାନଙ୍କର ଚିତ୍ର ମଧ୍ଯ ସାହିତ୍ୟରେ ରୂପାୟିତ ହେଲା । ସାମାଜିକ, ରାଜନୈତିକ, ଧାର୍ମିକ ଓ ସାଂସ୍କୃତିକ ଜୀବନର ଚିତ୍ର ମଧ୍ୟ ଏଥିରେ ଫୁଟିଉଠିଲା । ରାଧାନାଥଙ୍କ ଉଷା,

*

ମହାଯାତ୍ରା, ଗଙ୍ଗାଧରଙ୍କ ତପସ୍ୱିନୀ, ମଧୁସୂଦନଙ୍କ ସୀତାବନବାସ ପ୍ରଭୃତି ଏହାର ପ୍ରକୃଷ୍ଟ ଉଦାହରଣ ।

## (ଖ) ପ୍ରେମ ବର୍ଣ୍ଣନାରେ ବୈଚିତ୍ର୍ୟ—

ଅତୀତଯୁଗୀୟ ପ୍ରେମ ବର୍ଣ୍ଣନାରେ ବୈଚିତ୍ର୍ୟ ଲକ୍ଷ୍ୟ କରାଯାଏ ନାହିଁ । ସେ ଯୁଗର ପ୍ରେମର ବୈଶିଷ୍ଟ୍ୟ ଫୁଟିଉଠିଛି ଦୈହିକ ମିଳନରେ । ମିଳନର ଯଜ୍ଞବେଦୀରେ ପ୍ରେମର ବେଦଧ୍ୱନି ଉଚ୍ଚାରଣ କରିବାକୁ କବିମାନେ ଉତ୍କଣ୍ଠିତ ହୋଇଛନ୍ତି । ପୁଣି ଏହି ପ୍ରେମ ରତିରଣ କଙ୍କଣରେ କଙ୍କଣିତ ହୋଇ ଉଠିଛି । ମାତ୍ର ଏହି ପ୍ରେମ ଦେହର ବଳୟ ମଧ୍ୟରେ ରୁଦ୍ଧଶ୍ୱାସ ହୋଇ ଆତ୍ମହତ୍ୟା କରିଛି । ଏପ୍ରେମ ଦେହଜ ପ୍ରେମ । ପ୍ରେମର ମୃତ୍ୟୁ ହୁଏ ମିଳନରେ । ପ୍ରେମର ବୈଶିଷ୍ଟ୍ୟ ଫୁଟିଉଠେ ବିରହରେ, ଅଶ୍ରୁରେ । ଝରି ପଡୁଥିବା ପ୍ରତ୍ୟେକ ଅଶ୍ରୁବିନ୍ଦୁ ମଧ୍ୟ ଦେଇ ପ୍ରେମର ସପ୍ତରଙ୍ଗୀ ଇନ୍ଦ୍ରଧନୁ ପ୍ରକଟିତ ହୋଇଉଠେ । ପ୍ରେମର ସାର୍ଥକତା; ମୃତ୍ୟୁରେ, ଜୀବନରେ ନୁହେଁ । ରାଧାନାଥ ଯୁଗୀୟ ସାହିତ୍ୟରେ ଏହି ଚିନ୍ତା ଦେଖିବାକୁ ମିଳିଥାଏ । ବିଶେଷ କରି ରାଧାନାଥଙ୍କ ବିଭିନ୍ନ କାବ୍ୟରେ ପ୍ରେମର ପରାକାଷ୍ଠା ମୃତ୍ୟୁରେହିଁ ଫୁଟି ଉଠିଛି । ବିୟୋଗାନ୍ତକ କାବ୍ୟର ଲେଖକ ଭାବରେ ରାଧାନାଥ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ପ୍ରେମର ବୈଚିତ୍ର୍ୟ ବର୍ଣ୍ଣନାରେ ତାଙ୍କର କାବ୍ୟ ରୁଦ୍ଧିମନ୍ତ ହୋଇଛି । ଗଙ୍ଗାଧରଙ୍କ କାବ୍ୟରେ ପ୍ରେମର ଶାନ୍ତଭାବ ଫୁଟି ଉଠିଛି । ମାତ୍ର ମଧୁସୂଦନଙ୍କର କାବ୍ୟ କବିତାରେ ପ୍ରେମର ଅମୃତମୟ ଭାବ ସୃଷ୍ଟି ହୋଇଛି ।

## (ଗ) ପ୍ରକୃତି ଚିତ୍ରଣରେ ଅଭିନବତ୍ୱ—

ରାଧାନାଥଙ୍କ ପୂର୍ବରୁ ପ୍ରକୃତି ବର୍ଣ୍ଣନା ଥିଲା ଗତାନୁଗତିକ । କେବଳ ବାହ୍ୟ ପ୍ରକୃତିର କମନୀୟ ବର୍ଣ୍ଣନାହିଁ ଓଡ଼ିଆ କାବ୍ୟସାହିତ୍ୟକୁ ବିମଣ୍ଡିତ କରିଥିଲା, ମାତ୍ର ରାଧାନାଥ ପ୍ରକୃତି ବର୍ଣ୍ଣନାରେ ଅଭିନବତ୍ୱ ସୃଷ୍ଟି କଲେ । ରାଧାନାଥଙ୍କ ପ୍ରକୃତି ଆଉ ଜଡ଼ପ୍ରକୃତି ନୁହେଁ । ଏହା ହେଲା ବାକ୍‌ପ୍ରଦାୟିନୀ । ମଣିଷର ସୁଖ ଓ ଦୁଃଖରେ ଏହା ହେଲା ସମଭାଗିନୀ । ପ୍ରକୃତି ହେଲା ଜୀବନ୍ତ, ବାହ୍ୟ ପ୍ରକୃତି ଓ ଅନ୍ତଃ ପ୍ରକୃତିର ସମନ୍ୱୟରେ ଏ ଯୁଗର କାବ୍ୟସାହିତ୍ୟ

ହେଲା ପ୍ରାଣବନ୍ତ । ରାଧାନାଥଙ୍କ ହସ୍ତରେ ଚିଲିକା କେବଳ ହ୍ରଦ ନୁହେଁ । ସେ ହେଉଛି କାବ୍ୟର ନାୟିକା "ଉତ୍କଳ କମଳାବିଳାସ ଦୀର୍ଘିକା-ମରାଳ-ମାଳିନୀ-ନୀଳାମ୍ବୁ ଚିଲିକା ।" ସେ ସଖୀ, ସେ ଉତ୍କଳ କମଳାଙ୍କର ରକ୍ଷାକର୍ତ୍ତ୍ରୀ । ଗଙ୍ଗାଧରଙ୍କ ପ୍ରକୃତି ଆହୁରି ଜୀବନ୍ତ । ମଣିଷର ଦୁଃଖ ଓ ସୁଖରେ ସେ ପ୍ରକୃତି ସମଭାଗିନୀ ହୋଇଛି । ତପସ୍ୱିନୀ କାବ୍ୟରେ ଏହାର ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ପାଶ୍ଚାତ୍ୟ ସାହିତ୍ୟ ଆଦର୍ଶରେ ଅନୁପ୍ରାଣିତହୋଇ ରାଧାନାଥଙ୍କ କବିଚିତ୍ତ "Back to Nature"ର ମନ୍ତ୍ରରେ ଦୀକ୍ଷିତ ହୋଇ ପ୍ରକୃତି ବର୍ଣ୍ଣନାରେ ନୂତନତା ପ୍ରଦାନକଲା ।

## (ଘ) ଏ ଯୁଗୀୟ କାବ୍ୟ କବିତାରେ ମାନବିକ ଆବେଦନ—

ରାଧାନାଥ ଯୁଗୀୟ ସାହିତ୍ୟରେ ମାନବିକ ଆବେଦନ ପ୍ରାଧାନ୍ୟ ଲାଭକଲା । ପୂର୍ବରୁ କେବଳ ରାଜାରାଣୀ, ଓ ରାଧାକୃଷ୍ଣଙ୍କର ଜୀବନର କାହାଣୀ ବର୍ଣ୍ଣିତହେଉଥିଲା । ମାତ୍ର ଏଯୁଗରେ ସାଧାରଣ ମଣିଷର ଜୀବନର କାହାଣୀକୁ ସହାନୁଭୂତି ସହକାରେ ବର୍ଣ୍ଣନା କରାଗଲା । ଏହିବର୍ଣ୍ଣନାରେ ସାର୍ବଜନୀନ ମାନବିକ ଆବେଦନ ପ୍ରାଧାନ୍ୟ ଲାଭକରିଛି ।

## (ଙ) କାବ୍ୟଗଠନରେ ପରିବର୍ତ୍ତନ—

ଏଯୁଗରେ କାବ୍ୟ କବିତା ଗଠନରେ ନୂତନତା ଦେଖାଦେଲା । ଗତାନୁଗତିକ ଛନ୍ଦ, ଯତି, ନିୟମ ଇତ୍ୟାଦିର ପରିବର୍ତ୍ତନ ହେଲା । ସାହିତ୍ୟ ହେଲା ଯୁଗାଶ୍ରୟୀ । ଛନ୍ଦନିୟମ ଅନୁସରଣ କରିବାର କଠୋର ନିୟମ ଦୂରେଇ ଯାଇ ସରଳ ନିୟମ ଅନୁସୃତହେଲା । ସାହିତ୍ୟରୁ ସଙ୍ଗୀତିକତା ମଧ୍ୟ ଲୋପ ପାଇଗଲା । ଗୋଟିଏ କାବ୍ୟରେ ବିଭିନ୍ନ ଛନ୍ଦର ମଧ୍ୟ ପ୍ରୟୋଗ ହେଲା ନାହିଁ । ରାଧାନାଥ ଏପରି କରିନାହାନ୍ତି । ଅବଶ୍ୟ ଗଙ୍ଗାଧର ଏପରି କରିଥିଲେହେଁ, ତାହା ଅପେକ୍ଷାକୃତ ସରଳ। ପୁଣି ରୀତିଯୁଗୀୟ ସାହିତ୍ୟ ଅଳଙ୍କାରର ଦୁର୍ବହ ଭାରରେ ଭାରାକ୍ରାନ୍ତ ହୋଇପଡ଼ିଥିଲା ମାତ୍ର ଏଯୁଗରେ ଅଳଙ୍କାରର

ଆଧିକ୍ୟ ପ୍ରତି ଗୁରୁତ୍ୱ ଦିଆଗଲନାହିଁ । ସରଳ ସାବଲୀଳ ଭାଷାମାଧ୍ୟମରେ ଭାବର ଶୁଭ୍ରତ୍ୱ ପ୍ରକାଶିତ ହେଲା, ଶବ୍ଦ କାଠିନ୍ୟକୁ ଏଯୁଗରେ ସର୍ବାଦୌ ପରିହାର କରିଗଲେ । ଏହାଛଡ଼ା ଏଯୁଗରେ, ବିଶେଷ କରି ରାଧାନାଥଙ୍କ କାବ୍ୟ କବିତାରେ ଉପଧା ମିଳନର ଛନ୍ଦ ଦେଖିବାକୁ ମିଳିଥାଏ । ଅମିତ୍ରା-କ୍ଷରରେ କାବ୍ୟରଚନା କରିବା ଏହି ଯୁଗରେ ପ୍ରଥମଥର ପାଇଁ ଉଦ୍ୟମ ହେଲା । ରାଧାନାଥଙ୍କର ମହାଯାତ୍ରା ଏହାର ଏକ ସଫଳ ଦୃଷ୍ଟାନ୍ତ । ଅବଶ୍ୟ ରାମଶଙ୍କର ତାଙ୍କର ନାଟକରେ ଏହି ଛନ୍ଦର ପ୍ରୟୋଗ କରିଛନ୍ତି, ! ଏହାବ୍ୟତୀତ ଏଯୁଗରେ ବହୁକ୍ଷୁଦ୍ର କବିତା ରଚନା କରିଯାଇଛି । ଏଗୁଡ଼ିକରେ ତତ୍‌କାଳୀନ ସମୟର ପ୍ରାଣସ୍ପନ୍ଦନ ଦେଖିବାକୁ ମିଳିଥାଏ ।

## (ଡ) ହାସ୍ୟ ଓ ବ୍ୟଙ୍ଗ ସାହିତ୍ୟର ସୃଷ୍ଟି—

ରାଧାନାଥ ଯୁଗ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଯଦିଓ ହାସ୍ୟରସାତ୍ମକ ସାହିତ୍ୟ ସୃଷ୍ଟି ହୋଇଥିଲା ମାତ୍ର ସେସବୁ ପ୍ରକ୍ଷିପ୍ତ । ବ୍ୟଙ୍ଗସାହିତ୍ୟ ନଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଧାନାଥ ଯୁଗରେ ବ୍ୟଙ୍ଗ ଏବଂ ହାସ୍ୟ ରସାତ୍ମକ ସାହିତ୍ୟର ବହୁଳ ସୃଷ୍ଟି ହେଲା । ରାଧାନାଥଙ୍କର 'ଦରବାର' ଫକୀରମୋହନଙ୍କର 'ମୁଁ ହାଟ ବାହୁଡ଼ା' ଓ ମଧୁସୂଦନଙ୍କର 'ଭଣ୍ଡ ରସ୍ମସାନ' ଓ ''ସାବାସ୍‌ରେ ସାହିତ୍ୟ ଚର୍ଚ୍ଚା।'' ଆଦି ଗୋଟିଏ ଗୋଟିଏ ସାର୍ଥକ ବ୍ୟଙ୍ଗରଚନା । ସମାଜ ଏବଂ ଜୀବନକୁ ଶୃଙ୍ଖଳିତ କରିବାପାଇଁ ବ୍ୟଙ୍ଗରଚନାର ଏକାନ୍ତ ଆବଶ୍ୟକତା ଅଛି ।

## (ଢ) ଅନୁବାଦ ସାହିତ୍ୟର ବିକାଶ—

ଏ ଯୁଗରେ ଅନୁବାଦ ସାହିତ୍ୟ ଉପରେ ପ୍ରାଧାନ୍ୟ ଦିଆଯାଇଥିବା ଲକ୍ଷ୍ୟ କରିଯାଏ । ଅନୁବାଦ ଦ୍ୱାରା ଗୋଟିଏ ସାହିତ୍ୟ ଉନ୍ନତ ହୋଇ ଥାଏ । ମଧୁସୂଦନଙ୍କର ନିର୍ବାସିତର ବିଳାପ କବିତାଟି William Cowperଙ୍କର "Solitude of Alexander Selkirk." କବିତାର ସୁନ୍ଦର ଭାବାନୁବାଦ । କାଳିଦାସଙ୍କର ମେଘଦୂତକୁ ମଧ୍ୟ କବିବର

ରାଧାନାଥ ଅନୁବାଦ କରିଥିଲେ । ଏଯୁଗରେ ସଂସ୍କୃତ ଏବଂ ଇଂରାଜୀ ସାହିତ୍ୟରୁ ବହୁ ଉପାଦାନ ଅନୂଦିତ ହୋଇ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିଥିଲା ।

## (ଜ) ଗଦ୍ୟ ଓ ପତ୍ରପତ୍ରିକାର ବିକାଶ—

ଏହି ଯୁଗରେ ଗଦ୍ୟସାହିତ୍ୟର ବିକାଶ ମୁଖ୍ୟତଃ ହୋଇଥିଲା । ପଢ଼ୋଶୀ ତଥା ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ ଓଡ଼ିଆ ସାହିତ୍ୟରେ ଗଦ୍ୟର ବିକାଶ ହେଲା । ଏଯୁଗରେ ଉପନ୍ୟାସ ଏବଂ ଗଳ୍ପର ବିକାଶ ଫକୀରମୋହନଙ୍କ ଦ୍ୱାରା ସମ୍ଭବହୋଇଥିଲା । ମଧୁସୂଦନ, ରାଧାନାଥ, ଗଙ୍ଗାଧର, ନନ୍ଦକିଶୋର, ଗୌରୀଶଙ୍କର, ବିଶ୍ୱନାଥ ପ୍ରଭୃତି ଏଯୁଗରେ ଗଦ୍ୟର ବିକାଶ ଦିଗରେ ଧ୍ୟାନ ଦେଇଥିଲେ । ଏ ଯୁଗରେ ନାଟକର ମଧ୍ୟ ଭୂୟୋବିକାଶ ସାଧିତ ହୋଇଥିଲା । ଏହାବ୍ୟତୀତ ଏ ଯୁଗରେ ବହୁ ପତ୍ରିକା ବାହାରି ଓଡ଼ିଆସାହିତ୍ୟର ଉନ୍ନତିରେ ସହାୟକ ହୋଇଥିଲା । ଉତ୍କଳ ମଧୁପ, ଉତ୍କଳ ପୁତ୍ର, ସାହିତ୍ୟ ଦର୍ପଣ, ସମ୍ବଲପୁର ହିତୈଷିଣୀ, ଉତ୍କଳ ସାହିତ୍ୟ, ସମ୍ବାଦ ବାହିକା, ଉତ୍କଳ ଦୀପିକା ଆଦି ବିଭିନ୍ନ ପତ୍ର ପତ୍ରିକା ଓଡ଼ିଆସାହିତ୍ୟର ଉନ୍ନତି ପାଇଁ ବିଶେଷ ଧ୍ୟାନ ଦେଇଥିଲେ ।

ମୋଟ ଉପରେ ରାଧାନାଥ ଯୁଗ ବହୁ ବୈଚିତ୍ର୍ୟରେ ପରିପୂର୍ଣ୍ଣ । କାବ୍ୟ, ନାଟକ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଆଦି ବିଭାଗରେ ଓଡ଼ିଆ ସାହିତ୍ୟ ସମୃଦ୍ଧହୋଇ ଥିଲା ।

## ଦରବାର—

ଯନ୍ତ୍ରଣାଜର୍ଜର କବିର ଆତ୍ମଲିପିହିଁ 'ଦରବାର' । ରାଧାନାଥଙ୍କ ଜୀବନର ଶେଷକାଳରେ ଅର୍ଥାତ୍ ୧୮୯୦ ପରେ ଯେଉଁ ଅନ୍ତର୍ବେଦନା ଦେଖାଦେଇଥିଲା ତାର ମନ୍ମୟ ପ୍ରକାଶହିଁ ଦରବାର' ଓ 'ଚିଲିକା' । ରାଧାନାଥଙ୍କୁ ଜାତିର କଳଙ୍କ ରୂପକାର ଭାବରେ ସମାଲୋଚନା କରାଯାଇଥିଲା । ପାର୍ବତୀ, ଚନ୍ଦ୍ରଭାଗା ଆଦିକାବ୍ୟରେ ସେ ଜାତୀୟ ସଂସ୍କୃତି ଓ ଐତିହ୍ୟକୁ କ୍ଷୁର୍ଣ୍ଣ କରିଛନ୍ତି

ବୋଲି ସମାଲୋଚକମାନେ କଠୋରଭାବରେ ତାଙ୍କୁ ବିଦ୍ରୂପ କରିଥିଲେ। ତାଙ୍କର ଜାତିପ୍ରୀତି ନାହିଁ; ଏକଥାରେ ସେ ମର୍ମାହତ ହୋଇଥିଲେ । ଏହି ଅନ୍ତର୍ବେଦନାର କରୁଣ ମୂର୍ଚ୍ଛନା ହେଉଛି 'ଚିଲିକା' । ଏଥିରେ ସେ ଗଭୀର ଜାତିପ୍ରୀତି ଦେଖାଇବା ସଙ୍ଗେ ସଙ୍ଗେ ବ୍ୟକ୍ତିଜୀବନର ମାର୍ମିକ ଯନ୍ତ୍ରଣାର କରୁଣ ସ୍ୱରକୁ ନିକ୍ୱଣିତ କରିଅଛନ୍ତି । ମାତ୍ର 'ଦରବାର' କବି ଜୀବନର ଭିନ୍ନଏକ ଦୃଷ୍ଟିକୋଣ ପ୍ରଦାନ କରିଥାଏ । ନିରନ୍ତର ସାହିତ୍ୟ ସାଧନାକରି, ଦାରିଦ୍ର୍ୟକୁ ଯେ ବରଣ କରିନଏ, ନିଜ ଜୀବନର ସମସ୍ତ ସୁଖ ସମ୍ଭୋଗକୁ ତୁଚ୍ଛ ମନେକରି ସାହିତ୍ୟର ବିକାଶ ଦିଗରେ ଯେ ମନୋନିବେଶ କରେ ସେ ପରିଣତିରେ ପାଏ ଲାଞ୍ଛନା । ସେ ହୁଏ ବ୍ୟଙ୍ଗ ଓ ବିଦ୍ରୂପର ଶରବ୍ୟ । ଓଡ଼ିଶାରେ ସତେ ଯେପରି ଏହା ଏକ ଜାତୀୟଗୁଣ । କବି ରାଧାନାଥ ତେଣୁ ଶତ୍ରୁ ଆକ୍ରମଣରେ ଜର୍ଜରିତ ହୋଇ 'ଦରବାର' କାବ୍ୟରେ ବୌଦ୍ଧିକ ଓ ହାର୍ଦ୍ଦିକ ପ୍ରତି ଆକ୍ରମଣ କରିଛନ୍ତି । ମାତ୍ର ଏହି ଆକ୍ରମଣ ଓ ବିଦ୍ରୂପ ଏକାନ୍ତ ବ୍ୟକ୍ତିଗତ ନହୋଇ ସାର୍ବଜନୀନ ଏବଂ କାବ୍ୟିକ ମହିମାରେ ମହିମାନ୍ୱିତ ହୋଇ ପାରିଛି । ନିକ୍ଷେପିତ, ଅତ୍ୟାଗ୍ରହ ଜର୍ଜରିତ, ଅବଗ୍ରହ ବିଦଳିତ କବି ପ୍ରାଣର କାବ୍ୟିକ ଅମୃତଲିପି ହେଉଛି 'ଦରବାର' ବ୍ୟଙ୍ଗ କାବ୍ୟ ।

## 'ଦରବାର' କାବ୍ୟର ପୃଷ୍ଠ ଭୂମି—

'ଦରବାର' କାବ୍ୟର ପୃଷ୍ଠଭୂମି କବିଙ୍କର ଅନ୍ତର୍ବେଦନାରୁ, ସୃଷ୍ଟି-ହୋଇଛି । ମହାଯାତ୍ରାର ଅସମ୍ପୂର୍ଣ୍ଣତା ପରେ ଏହାର ପରିକଳ୍ପନା କରାଯାଇଛି । ତତ୍‌କାଳୀନ ସାମାଜିକ, ରାଜନୀତିକ, ଓ ପ୍ରଶାସନିକ ବ୍ୟବସ୍ଥାକୁ ଏହି କାବ୍ୟରେ ବ୍ୟଙ୍ଗ ବିଦ୍ରୂପ କରାଯାଇଛି । ଓଡ଼ିଶାର ଗୌରବମୟ ଅତୀତ ଇତିହାସର ମୂକସାକ୍ଷୀ ବାରବାଟୀ ଦୁର୍ଗ ମଧ୍ୟରେ ୧୮୯୪ ସାଲ ଅଗଷ୍ଟ ମାସ ୨୯ତାରିଖ ବୁଧବାର ଦିନ ଦୁଇଟା ସମୟରେ ଗୋଟିଏ ଦରବାର ହୋଇଥିଲା । ଉକ୍ତ ଦରବାରରେ ଓଡ଼ିଶାର ତତ୍‌କାଳୀନ କମିଶନର କୁକ୍ ସାହେବ ସଭାପତି ହୋଇ ଥିଲେ । ଏହି ଦରବାର ଆଡ଼ମ୍ବର ସହକାରରେ ସଜ୍ଜିତ ହୋଇଥିଲା । କାଉପୁର ଜମିଦାର ଗୋବିନ୍ଦ ବଲ୍ଲଭ ରାୟଙ୍କ ( ରାଧାନାଥଙ୍କ ଭଗିନୀ ପତି ) 'ରାୟବାହାଦୂର' ଓ ଖଣ୍ଡପଡ଼ାର ସାମନ୍ତ ଚନ୍ଦ୍ରଶେଖରଙ୍କୁ 'ମହାମହୋପାଧ୍ୟାୟ,

ଉପାଧି ଏହି ଦରବାରରେ ପ୍ରଦାନ କରାଯିବାର ବ୍ୟବସ୍ଥା ହୋଇଥିଲା । କଟକରେ ଥିବା ଏବଂ କଟକ ନିକଟସ୍ଥ କେତେକ ରାଜା, ଜମିଦାର ଏବଂ ସରକାରୀ କର୍ମଚାରୀ ମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଏହି ଦରବାରରେ କେବଳ ଗୋବିନ୍ଦ ବଲ୍ଲଭ ରାୟ ଉପାଧି ଲାଭ କରିଥିଲେ । ସାମନ୍ତଚନ୍ଦ୍ର ଶେଖର ଯଥା ସମୟରେ ଉପସ୍ଥିତ ନ ପାରିବାରୁ ପୁନଶ୍ଚ ତାଙ୍କୁ ୧୮୯୪ ସାଲ ସେପ୍ଟେମ୍ବର ମାସ ରବେନ୍‌ସାରୀରେ ସ୍ୱତନ୍ତ୍ର ଦରବାରରେ କୁକ୍ ସାହେବଙ୍କ ସଭାପତିତ୍ୱରେ "ମହାମହୋପାଧ୍ୟାୟ" ଉପାଧିରେ ସମ୍ମାନିତ କରାଯାଇଥିଲା । କବିବର ରାଧାନାଥ ଏହି ଦୁଇଟି ଦରବାରକୁ କବିତାର କଥାବସ୍ତୁ ଭାବରେ ଗ୍ରହଣ କରିଛନ୍ତି । ପ୍ରଥମେ ସେ ୧୮୯୬ସାଲରେ ଏହି ବିଷୟକୁ ରଚନା କରି ନାମ ଦେଇଥିଲେ "ବୈୟାସିକୀ ବାଣୀ" । ମାତ୍ର ପରେ ତାଙ୍କର ପୁତ୍ର ଶଶୀଭୂଷଣଙ୍କ ଅନୁରୋଧ କ୍ରମେ ଉକ୍ତ ନାମକୁ ପରିବର୍ତ୍ତନ କରି "ଦରବାର" ନାମକରଣ କରିଥିଲେ ।

## 'ଦରବାର'ର କଥାବସ୍ତୁର ସୂଚନା—

"ଦରବାର' କବିଜୀବନର ଅନ୍ତର୍ବେଦନାର ଅଗ୍ନିଲିପି ହେଲେହେଁ ଏଥିରେ କବି କେତେକ ବିଷୟର ଅବତାରଣା କରିଅଛନ୍ତି ।

(କ) ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଦରବାରର ଅନୁଷ୍ଠାନ । ବାରବାଟୀର ଐତିହାସିକ ପରିପ୍ରଦାନ । ଅତୀତ ଓ ବର୍ତ୍ତମାନର ତୁଳନା । ରାଜାମାନଙ୍କର ଆସିବାର ଆଡ଼ମ୍ବର ପୂର୍ଣ୍ଣ ବର୍ଣ୍ଣନା ।

(ଖ) ଉପାଧି ବିଷୟରେ କବିଙ୍କର ଅଭିମତ, ଉପାଧିର ଅଳୀକତା । ଅହଂସର୍ବସ୍ୱମଣିଷର ଦରବାରର ଅସାରତା ଏବଂ ପରଲୋକର ଦରବାରର ସାରତ୍ୱ ଓ ନିରପେକ୍ଷତା ବର୍ଣ୍ଣନା ।

(ଗ) ଆସନ ବିବାଦର ବର୍ଣ୍ଣନା । ସରକାରୀ କର୍ମଚାରୀ, ଓ ପୋଲିଶ୍ ଆଦିଙ୍କ ପ୍ରତି ବ୍ୟଙ୍ଗ ।

(ଘ) 'ଅକିଂଚନ'ର ନିବେଦନ, ଏପ୍ରସଙ୍ଗରେ କବିଙ୍କର ଅଭିମତ ।

(ଙ) ରାଜାମାନଙ୍କ ବିଷୟ ବର୍ଣ୍ଣନା—ରାଜାମାନଙ୍କର ଭୋଗବିଳାସ-ମୟ ଜୀବନର ଚିତ୍ର । ନୈତିକ ଜୀବନ ପାଇଁ ଉପଦେଶ ।

(ଚ) ସାମନ୍ତ ଚନ୍ଦ୍ରଶେଖରଙ୍କ ବିଷୟରେ କବିଙ୍କର ଅଭିମତ ।

## ଓଡ଼ିଆ ବ୍ୟଙ୍ଗ ସାହିତ୍ୟରେ ଦରବାରର ସ୍ଥାନ:—

ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗ କାବ୍ୟର ପ୍ରଚଳନ ନ ଥିଲା । ହାସ୍ୟରସାତ୍ମକ ରଚନା ଥିଲେହେଁ ବ୍ୟଙ୍ଗାତ୍ମକ ରଚନା ନ ଥିଲା । କହିଲେ ଚଳେ । ବ୍ୟଙ୍ଗ ରଚନା ସାଧାରଣ ଲେଖକ ହାତରେ ସମ୍ଭବ ହୁଏ ନାହିଁ । ସେହି ବ୍ୟକ୍ତିହିଁ ବ୍ୟଙ୍ଗ ସାହିତ୍ୟ ସୃଷ୍ଟି କରିପାରେ ଯିଏ ସାମାଜିକ ସମସ୍ୟା ସହିତ ଘନିଷ୍ଠ ଭାବରେ ବିଜଡ଼ିତ ହୋଇଥାଏ । ସମସାମୟିକ ସାମାଜିକ ଓ ରାଜନୀତିକ ଦୁର୍ନୀତି ଓ ଅନ୍ୟାୟକୁ ସେ କଠୋର ଭାବରେ ତାର କାବ୍ୟ କବିତାରେ ପ୍ରକାଶ କରେ । ବ୍ୟକ୍ତି ବିଶେଷଙ୍କୁ ମଧ୍ୟ ସେ କଠୋର ଭାବରେ ସମାଲୋଚନା କରନ୍ତି । ବ୍ୟଙ୍ଗ ସାହିତ୍ୟ ଉଦ୍ଦେଶ୍ୟ ମୂଳକ । ସାମାଜିକ ସଂସ୍କାର, ରାଜନୀତିକ ପବିତ୍ରତା ରକ୍ଷାପାଇଁ ବ୍ୟଙ୍ଗ କାବ୍ୟର ଏକାନ୍ତ ପ୍ରୟୋଜନ । ବ୍ୟକ୍ତି ଓ ଗୋଷ୍ଠୀ ବିଶେଷଙ୍କୁ ମଧ୍ୟ ନିର୍ମମ ଭାବରେ ସମାଲୋଚନା କରାଯାଇ ଥାଏ । ବ୍ୟଙ୍ଗ ରଚନାକାରୀ ବ୍ୟକ୍ତିକୁ ତୀକ୍ଷ୍ଣ ଅସିଧାର ଉପରେ ଛିଡ଼ା କରାଇ ଦେଇ ତାର ପରିଣତି ସମ୍ବନ୍ଧରେ ଆଦୌ ଚିନ୍ତା କରେ ନାହିଁ । ବ୍ୟଙ୍ଗ ରଚନା ବାହାରକୁ ହାସ୍ୟରସ ସଞ୍ଚାର କରୁଥିଲେହେଁ ଯେଉଁ ବ୍ୟକ୍ତି ଓ ଗୋଷ୍ଠୀ ପ୍ରତି ଏହା ଉଦ୍ଦିଷ୍ଟ ହୋଇଥାଏ ସେମାନଙ୍କ ଅନ୍ତରରେ ସତେ ଯେପରି ଛୁରିକାଘାତ କରେ । ବ୍ୟଙ୍ଗ ସାହିତ୍ୟର ଉଦ୍ଦେଶ୍ୟ ହେଲା ସମାଜକୁ ମାର୍ଜିତ କରିବା । ବ୍ୟକ୍ତିବିଶେଷଙ୍କୁ ସଂସ୍କୃତ କରିବା । ବ୍ୟଙ୍ଗ ଯଦି ଏକାନ୍ତ ବ୍ୟକ୍ତିଗତ ହୁଏ ଏବଂ କେବଳ ଅସୂୟା ଭାବଦ୍ୟୋତକ ହୋଇଥାଏ ତେବେ ଏହାର କଳାତ୍ମକ ମୂଲ୍ୟ ହ୍ରାସପାଏ । ତେଣୁ ବ୍ୟଙ୍ଗକାର ଏକାନ୍ତ ଭାବରେ ବ୍ୟକ୍ତି ନିରପେକ୍ଷ ହୋଇ ବ୍ୟଙ୍ଗ ସାହିତ୍ୟ ସୃଷ୍ଟି କରିଥାଏ । ତେଣୁ "The problem of style" ପ୍ରବନ୍ଧରେ କୁହା ଅଛି " Satire is not a matter of personal resentment, lent of personal contemplation. ସାହାଯ୍ୟର

ରଚନା ହେଉଛି ବୁଦ୍ଧିଦୀପ୍ତ । ତେଣୁ କୁହାଅଛି "Satire is woven from double stands. the red of wit and blue of rebuke-becoming the purple patch in literature E.P. ( whipple). ଉନ୍ନତ ବ୍ୟଙ୍ଗସାହିତ୍ୟ ମାଧ୍ୟମରେ ସାମାଜିକ ତଥା ଜାତୀୟ ଓ ରାଜନୀତିକ ଦୋଷଦୁର୍ବଳତା ସଂଶୋଧିତ ହୋଇପାରେ ।

ଗ୍ରୀକ ସାହିତ୍ୟରେ ହୋମର୍ ଓ ଆରିଷ୍ଟୋଫେନସ୍ ବ୍ୟଙ୍ଗ ସାହିତ୍ୟିକ ଭାବରେ ସ୍ୱୀକୃତ ହୋଇଥିଲେହେଁ ଇଂରେଜୀ ସାହିତ୍ୟରେ Pope ଓ Drydenଙ୍କର ବ୍ୟଙ୍ଗ ଧର୍ମୀ ରଚନା ପରବର୍ତ୍ତୀକାଳରେ ବିଶ୍ୱସାହିତ୍ୟରେ ବ୍ୟଙ୍ଗ ରଚନା କ୍ଷେତ୍ରରେ ନବଦିଗନ୍ତର ସୂଚନା ପ୍ରଦାନକରିଛି । ଅବଶ୍ୟ ଚସର ତତ୍କାଳୀନ ଧାର୍ମିକ ବ୍ୟକ୍ତିଙ୍କୁ ବ୍ୟଙ୍ଗକରି ରଚନା କରିଥିଲେ । ପରେ ଅଷ୍ଟାଦଶ ଶତାବ୍ଦୀରେ ଷ୍ଟିଲ୍, ଆଡ୍ଡିସନ ଓ ଗୋଲ୍ଡସ୍ମିଥ୍ ପ୍ରଭୃତି ଲେଖକମାନେ ବ୍ୟଙ୍ଗସାହିତ୍ୟକୁ ବ୍ୟାପକ କଲେ । ଗଦ୍ୟମାଧ୍ୟମରେ ବୁଦ୍ଧିଦୀପ୍ତ ବ୍ୟଙ୍ଗ ରଚନା କରି ସାମାଜିକ ତଥା ରାଜନୀତିକ ଦୋଷଦୁର୍ବଳତାର ସଂସ୍କାର ପାଇଁ ସେମାନେ ଚେଷ୍ଟା କରିଥିଲେ । ପରବର୍ତ୍ତୀ କାଳରେ pope, Dryden, Swift, ବର୍ଣ୍ଣସ୍, ବାଇରନ୍, ଓ ସାମୁଏଲ ବଟ୍ଲର୍ ପ୍ରଭୃତି ବ୍ୟଙ୍ଗ ସାହିତ୍ୟିକମାନେ ବ୍ୟଙ୍ଗ ସାହିତ୍ୟ ସୃଷ୍ଟି କରି ଅମରକୀର୍ତ୍ତି ରଖି ଯାଇଛନ୍ତି ।

ଡ୍ରାଇଡେନ୍ଙ୍କ ମତରେ ବ୍ୟଙ୍ଗ ମାଧ୍ୟମରେ ସମାଲୋଚନା କରିବା ହେଉଛି ବଳିଷ୍ଠ ପନ୍ଥା । ଇତରଭାବରେ ପ୍ରତିଦ୍ୱନ୍ଦ୍ୱୀଙ୍କୁ ବ୍ୟଙ୍ଗ କରିବା ବ୍ୟଙ୍ଗକାରର ଧର୍ମନୁହେଁ । ତେଣୁ ରାଧ ନାଥ ଡ୍ରାଇଡେନଙ୍କୁ ପ୍ରାୟ ଅନୁସରଣ କରି ବ୍ୟକ୍ତି ନିରପେକ୍ଷ ଭାବରେ 'ଦରବାର' ବ୍ୟଙ୍ଗକାବ୍ୟ ରଚନା କରିଛନ୍ତି । ଏଥିରେ ସେ ଡେପୁଟି, ପୁଲିସ, ମୁନିସିପାଲିଟି ଚେୟାରମାନ୍, ଓ ରାଜା ଜମିଦାରଙ୍କର ଆତ୍ମମ୍ଭରିତାକୁ ବିଦ୍ରୂପ କରିଛନ୍ତି । swift ଯେପରି ତାଙ୍କର Gulliver's Travels ନାମକ ଗ୍ରନ୍ଥରେ ପାର୍ଲିମେଣ୍ଟ ମହାସଭାର ସଭ୍ୟମାନଙ୍କୁ ସାକ୍ଷାତ୍କାର କରିଅଛନ୍ତି ରାଧାନାଥ ମଧ୍ୟ ଅନୁରୂପ ଭାବରେ ଦରବାରରେ ତତ୍କାଳୀନ ରାଜକର୍ମଚାରୀ ମାନଙ୍କୁ ବିଦ୍ରୂପ

*

କରିଛନ୍ତି । ପୁଣି ରାଧାନାଥ ଏହି କାବ୍ୟରେ ଭାଗ୍ୟ ଉପରେ ବିଶ୍ୱାସ କରିଛନ୍ତି । ପରକାଳରେ ଶାନ୍ତି ଲାଭ କରିବାକୁ ହେଲେ ଧର୍ମହିଁ ଏକମାତ୍ର ପାଥେୟ । ଇହକାଳରେ ମଣିଷର ପ୍ରକୃତ ମୂଲ୍ୟାୟନ ହୋଇପାରେ ନାହିଁ । ଖ୍ରୀଷ୍ଟିୟାନ ମାନେ 'Judgement day' ବା ଅନ୍ତିମ ବିଚାର ଦିବସରେ ବିଶ୍ୱାସ କରନ୍ତି । ହିନ୍ଦୁ ଧର୍ମରେ ମଧ୍ୟ ପରକାଳର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । ରାଧାନାଥ ଏହିସବୁ ପ୍ରଭାବରେ ପ୍ରଭାବିତ ହୋଇ ପରକାଳର ଦରବାର ସମ୍ବନ୍ଧରେ ବର୍ଣ୍ଣନା କରି ଦୁଷ୍ପ୍ରମାଦଗ୍ରସ୍ତ, ଅହଂଭାବାପନ୍ନ ବ୍ୟକ୍ତି-ମାନଙ୍କୁ ସତର୍କ କରି ଦେଇଛନ୍ତି । ମୋହମୁଦ୍‌ଗରର ଅମୂଲ୍ୟ ଉପଦେଶ ଭଳି ସେ ଉପଦେଶମାନ ପ୍ରଦାନ କରିଛନ୍ତି । ତାହାକୁ ସତ୍‌ପଥରେ ପରିଚାଳିତ କରିବା ପାଇଁ ରାଧାନାଥ ଏହି କାବ୍ୟରେ ପ୍ରଚ୍ଛନ୍ନ ପ୍ରେରଣା ଦେଇଛନ୍ତି । ରାଧାନାଥଙ୍କ ସମୟରେ ଅନ୍ୟତମ ବ୍ୟଙ୍ଗକାର ଭାବରେ ଫକୀର ମୋହନ ସେନାପତି ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଅର୍ଜନ କରିଥିଲେ । "ମୁଁ ହାଟ ବାହୁଡ଼ା" ତାଙ୍କର ଏକ ସାର୍ଥକ ବ୍ୟଙ୍ଗ ରଚନା । ଏହା ବ୍ୟତିତ ସେ କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସରେ ମଧ୍ୟ ବ୍ୟଙ୍ଗ ବିଦ୍ରୂପର ଭାବସୃଷ୍ଟି କରିଛନ୍ତି । ରାଧାନାଥଙ୍କ 'ଦରବାର' ଓଡ଼ିଆ ବ୍ୟଙ୍ଗ ସାହିତ୍ୟରେ ଯେ ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିଛି ଏଥିରେ ସନ୍ଦେହ ନାହିଁ ।

—*—

# ବାରବାଟୀ

ଉତ୍କଳର ପୂର୍ବକୀର୍ତ୍ତି ସ୍ମୃତି-ପୂତ
ବାରବାଟୀ ଆଜ ଯାକେ ସଙ୍କୀଭୂତ,
ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀରରକ୍ତପିଣ୍ଡେ ଗଢ଼ା ଯାର ମାଟି,
ବାରବାଟୀ ଯହିଁ ମନ ସ୍ମୃତି-ପୋତେ

ବାହିଯାଏ ପ୍ରତିଲୋମେ କାଳସ୍ରୋତେ,
କାଳେ କାଳେ କେତେ ଦେଖି ଯେ ଆସିଲା
ନଶ୍ୱର ନରର ଗରିମାର ଲୀଳା !
ପୁଣି ନୂଆଲୀଳା ଲାଗିଛି ଏଠାରେ,
ପୁଣି ମତ୍ତନରେ ନଶ୍ୱର ବ୍ୟାପାରେ

---

୧। ପୂର୍ବ-କୀର୍ତ୍ତିସ୍ମୃତିପୂତ-ପ୍ରାଚୀନ କୀର୍ତ୍ତିମାନଙ୍କର ସ୍ମୃତିରେ ପବିତ୍ରିତ, ୩। ବାରବାଟୀ—କଟକ ନଗରରେ ମହାନଦୀ କୂଳରେ ଅବସ୍ଥିତ ଉତ୍କଳର ଦୁର୍ଗ। ୪—ପିଣ୍ଡେ—ଶରୀରେ।୫। ସ୍ମୃତି-ପୋତ—ସ୍ମୃତିରୂପକ ନୌକା; ।୬। ପ୍ରତିଲୋମେ—( ସ୍ରୋତରେ ) ବିପରୀତ ଦିଗରେ; ୮। ନଶ୍ୱର—ଅସ୍ଥାୟୀ —ମରଣଶୀଳ, ଗରିମା-ବଡ଼ପଣ; ୧୦। ବ୍ୟାପାର-କାରବାର, କାର୍ଯ୍ୟ।, ୧୧। ମତ୍ତ—ମାତାଲ, ଉନ୍ମତ୍ତ,

ପୁଣି ଦେଖ ଆଜ ଗାଣମାର ଘଣ୍ଟା,
ଲୁଚବସି କାଳ କରେ ଯାକୁ ଥଣ୍ଟା,
ଦେଖିବାକୁ ଏହି ରାଜସ ଉତ୍ସବ
ରୁଣ୍ଡ ଦୁର୍ଗାଙ୍ଗଣେ ଅସଂଖ୍ୟ ମାନବ,
କାଞ୍ଚୀ-ଅଭିଯାନେ ଯେ ଦୁର୍ଗ ପ୍ରାଚୀର । ୧୫ ।

ବାଦ୍ୟନାଦେ ଦେଉଥିଲା ପ୍ରତିଗୀର,
ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଆଜ
ନବ୍ୟଉତ୍କଳର ଏ ସଭ୍ୟସମାଜ,
ଦୂର ନରପତି-ପ୍ରେତ-ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ । ୨୦ ।

ଦେଖନ୍ତ ସଖେଦେ ତାଙ୍କର ଦୁର୍ଜୟ
ଉତ୍କଳର ଏହି ଦଶା-ବିପର୍ଯ୍ୟୟ,
ଏହି ଶିଳାବନ୍ଧ ଯାଙ୍କର କୀରତି,
ପୁଣ୍ୟଶ୍ଳୋକ ମରକତ ମହୀପତି,

୧୨ । ଘଣ୍ଟା-ଆଡ଼ମ୍ବର, ୧୩ । ରାଜସ ( ରଜସ୍ + ଅ )—ରଜୋଗୁଣ ସମ୍ବନ୍ଧୀୟ; ରାଜସିକ. ୧୪ । ଦୁର୍ଗାଙ୍ଗଣ-ବାରବାଟି ଦୁର୍ଗର ଅଗଣା (ଏହିଠାରେ ଉପାଧି ବିତରଣ ଉପଲକ୍ଷେ, ଗୋଟିଏ ଦରବାର ହୋଇଥିଲା ) ୧୫ । ଦୁର୍ଗ-ପ୍ରାଚୀର-ଗଡ଼ପାଚେରି; ୧୬ । ପ୍ରତିଗିର ପ୍ରତିଧ୍ୱନି; ୧୭ । ଜରାଜୀର୍ଣ୍ଣ-ବାର୍ଦ୍ଧକ୍ୟ ଜନିତ ଅବସ୍ଥା । ୨୦ । ବ୍ୟୋମ-ଆକାଶ; ୨୧ । ସଖେଦେ ଖେଦ ବା ଦୁଃଖର ସହିତ; ଦୁର୍ଜୟ-ଅପରାଜେୟ; ୨୩ । ଶିଳାବନ୍ଧ-ଏଠାରେ କାଠଯୋଡ଼ି ଓ ମହାନଦୀର ପଥରବନ୍ଧ ଲକ୍ଷିତ, ୨୪ । ପୁଣ୍ୟଶ୍ଳୋକ-ପବିତ୍ରଯଶା; ମରକତ -କାଠଯୋଡ଼ି ପଥରବନ୍ଧ ନିର୍ମାତା ମରକତ କେଶରୀ ।

ଦେଖୁ ନାହାନ୍ତି କି ମନେ ବହି ଲାଜ
କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !
ଇନ୍ଦ୍ରନୀଳ ଶିର ଟେକି ନଭସ୍ତଳେ
ଏ ଦୃଶ୍ୟ ଦେଖନ୍ତି ଶାଶ୍ୱତ ଅଚଳେ,
ମଞ୍ଜୁରମା କାଞ୍ଚିନେମା ସ୍ନାନେ ପୂତା,
କାଞ୍ଚୀନେମା-ବେଣୀ-ପ୍ରଭ-ବେଣୀଯୁତା,
ଦୃଷଦ୍‌ବତୀରୂପେ ଜର୍ଜର ମୁଖରା,
ସୈକତନୀ ରୂପେ ନୀଳନୀରମ୍ବରା
ଠାବେ ଠାବେ ଦ୍ୱୀପ-ଟୈଳ-ଦ୍ୱୀପଦର୍ଶ୍ରୀ—
ପୁଚ୍ଛେ ବକ୍ଷ ଯାର ହୋଇଅଛି ମର୍ଣ୍ଣି,
ପ୍ରବାହ-ବହାରି-ଅରଣ୍ୟ-ଦନ୍ତୀର
ମଦେ ଚନ୍ଦ୍ରକିତ ଯାର ନୀଳ ନୀର,
ଅଗ୍ରେ ସେହି ନଦୀ ବହୁ ଅଛି ରଙ୍ଗେ
ଏ ରଙ୍ଗ ନିରେଖି ତରଙ୍ଗ-ଭ୍ରୂଭଙ୍ଗେ !'

---

୨୭ । ଇନ୍ଦ୍ରନୀଳ-ଇନ୍ଦ୍ରନୀଳ ପ୍ରସ୍ତର ! ୨୮। ଶାଶ୍ୱତ ଅଚଳେ-ଚିରସ୍ଥାୟୀ ପାହାଡ଼ମାନ; ୨୯ । କାଞ୍ଚୀନେମା-ପଦ୍ମାବତୀ; ଉତ୍କଳ ରାଜ ପୁରୁଷୋତ୍ତମ ଦେବ କାଞ୍ଚୀ ଜୟକରି ଏହାଙ୍କୁ ଘେନି ଆସିଥିଲେ, ପୂତ ପବିତ୍ର; ୩୦ । କାଞ୍ଚୀନେମା-ବେଣୀଯୁତା—କାଞ୍ଚୀ ରାଜକନ୍ୟା ପଦ୍ମାବତୀଙ୍କର ନୀଳକୁଟିଳ ବେଣୀ ସଦୃଶ ଯେଉଁ ମହାନଦୀର ତରଙ୍ଗମାଳା; ୩୧ । ଦୃଷଦ୍‌ବତୀ—ଯେଉଁ ନଦୀର ଶଯ୍ୟା ପ୍ରସ୍ତରମୟୀ । ମୁଖରା—ଶବ୍ଦାୟମାନା; ୩୨ । ସୈକତନୀ ବାଲୁକାମୟୀ, ନୀଳନୀରମ୍ବରା—ନୀଳଜଳହିଁ ଯେଉଁ ମହାନର ବସ୍ତ୍ରସ୍ୱରୂପ,—୩୩ । ଦ୍ୱୀପଦର୍ଶ୍ରୀ—ଛୋଟ ଛୋଟ ଟାପୁ । ୩୫ । ଅରଣ୍ୟଦନ୍ତୀ—ବନହସ୍ତୀ, ମଦ—ହସ୍ତୀର ଗଣ୍ଡରୁ ନିସୃତ ସୁଗନ୍ଧ ତରଳ ଦ୍ରବ୍ୟ; ୩୬ । ଚନ୍ଦ୍ରକିତ-ମୟୂର—ପୁଚ୍ଛ-ପର ଚର୍ଚ୍ଚିତ (ମୟୂର ପୁଚ୍ଛରେ ଥିବା ଗୋଲାକାର ବିନ୍ଦୁଗୁଡ଼ିକୁ ଚନ୍ଦ୍ରକ କହନ୍ତି । ) ୩୮ । ତରଙ୍ଗଭ୍ରୂଭଙ୍ଗେ-ଲହରୀ ରୂପକ ବକ୍ର ଦୃଷ୍ଟିପାତରେ ।

ଏକ ପରେ ଏକ ରାଜା ମହାରାଜା
ଆସନ୍ତି ବଜାଇ ନାନାରଙ୍ଗେ ବାଜା,

ଉଡଇ ପତାକା ଫର୍ଟକଇ ତ୍ରାସ,
ପାଏକ-କୁହାଟେ ମନେ ଲାଗେ ତ୍ରାସ,
ଆସ୍କନ୍ଦେ ଆହନ୍ତି ଅଶ୍ୱ ମାଳେ ମାଳ,
ଚତ୍ରମୁଣ୍ଡ କେତେ ଆସନ୍ତି ଶୁଣ୍ଡାଳ,
ଯାନ ବାହାନରେ ଲାଗିଅଛି ଧୂମ,

ପଡ଼ୁଅଛି ତୋପ ଗୁଡୁମ ଗୁଡୁମ ।
ଚନ୍ଦ୍ରାତପ ତଳେ ବିରାଜଇ ମଞ୍ଚ
ମହାର୍ଘ ବସନ ଭୂଷଣେ ସୁସଞ୍ଚ,
ସ୍ତମ୍ଭାବଳୀ ପଟେ ହୋଇଛି ମଣ୍ଡନ
ଅଗ୍ରେ ଧାଡ଼ି ଧାଡ଼ି ରାଜେ ବେତ୍ରାସନ

ନୀରବ ଗରବେ ପ୍ରହରୀ ମାଳିକା
ଦେଖାନ୍ତି ଭାସ୍ୱର-ଅସ୍ତ୍ର- ବର୍ଣ୍ଣିକା,
ଉପାଧି-ଜଡ଼ିତେ ଉପାଧି-ଜଡ଼ିତ
ଉପାଧିରେ ଆଜ କରିବେ ଜଡ଼ିତ;

---

୪୧ । ତ୍ରାସ-ତରାସ,( ଶୋଭାଯାତ୍ରାରେ ବ୍ୟବହୃତ ହୁଏ ); ୪୨ । ତ୍ରାସଭୟ, ୪୩ । ଆସ୍କନ୍ଦ—ଅଶ୍ୱର କଦମ ଚାଲି; ୪୪ । ଶୁଣ୍ଡାଳ-ହସ୍ତୀ; ଚତ୍ରମୁଣ୍ଡ-ହାତୀମାନଙ୍କର ମସ୍ତକ ଚର୍ଚ୍ଚିତ ହୋଇଥାଏ, ୪୭। ଚନ୍ଦ୍ରାତପ-ଚାନ୍ଦୁଆ, ମଞ୍ଚ — ଉଚ୍ଚ ସନ, ୪୮ । ମହାର୍ଘ—ଅତି ମୂଲ୍ୟବାନ୍, ସୁସଞ୍ଚ—ଅତି ସୁନ୍ଦର, ୪୯ । ସ୍ତମ୍ଭାବଳୀ—ଖମ୍ବସବୁ, ବେତ୍ରାସନ—ବେତଚଉକି, ୫୨। ଭାସ୍ୱର—ଉଜ୍ଜ୍ୱଳ ୫୩ । ଉପାଧି ଜଡ଼ିତ—ଉପାଧି ପାଇଥିବା ରାଜପୁରୁଷ ଉପାଧିପ୍ରାପ୍ତ ବ୍ୟକ୍ତିମାନଙ୍କୁ ଉପାଧିରେ ଭୂଷିତ କରିବେ ।

ପଢ଼ଟିଏ ଦେବେ କର୍ଣ୍ଣ-ରସାୟନ

ପଦ ଅନୁରୂପେ ବସନ ଭୂଷଣ
ଜଙ୍ଗ-ଭକ୍ଷ୍ୟ କ୍ଷୟଶୀଳ ତଲବାର,
ପୋଷକ ଚ଼ୁଟିଆ ମୂଷାର ଆହାର
ମୋତିମାଳ ଅସ୍ଥି-ବିକାର କେବଳ,
ଜଲକା ନୟନେ ଦଶେ ଯା ଉଜ୍ଜ୍ୱଳ

ଶିର ପେଞ୍ଚ ଯାହା କହୁ ଧନ ଅନ୍ତେ
ତରଳେ କରକା ପ୍ରାସ୍ତ କାଳଦନ୍ତେ ।
ପଦାର୍ଥ-ସମ୍ପର୍କ-ଶୂନ୍ୟ- ନୂଆ ପଦ
ସଙ୍ଗେ ମିଳିବ ଏ ନୂଆ ପରିଚ୍ଛଦ ।
ଏହି ଗୁର ଏହି ଅକିଞ୍ଚିତ କର

ସମ୍ମାନ ସକାଶେ ଏତେ ବ୍ୟସ୍ତ ନର
ହା ଧିକ ! ଏ ତୁକସାର ପଦପାଇଁ
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ !

---

୫୫ । କର୍ଣ୍ଣରସାୟନ – କର୍ଣ୍ଣର ତୃପ୍ତିକର; ପଦ···ଭୂଷଣ—ରାୟ ସାହେବ' ରାୟବାହାଦୂର ପ୍ରଭୃତି ଉପାଧି ସଙ୍ଗେ ତଦନୁରୂପ ବସ୍ତ୍ରାଲଙ୍କାର ପୁରସ୍କାର ଦେବା ବିଧି ଥିଲା, ୫୭ । ଜଙ୍ଗଭକ୍ଷ୍ୟ—ଯାହାକୁ ଜଙ୍ଗ ବା କଳଙ୍କ ଖାଇଯାଏ; ଜଙ୍ଗ—କଙ୍କ [ Junc ] । ୫୮ । ତଲବାର-ଖଣ୍ଡା । ୫୯ । ମୋତି·· କେବଳ—ମୁକ୍ତା ଅସ୍ଥିର ରୂପାନ୍ତର ମାତ୍ର;-ଜଲକା—ଯାହା ସ୍ପଷ୍ଟ ଦେଖିପାରେ ନାହିଁ ୬୧ । ଶିରପେଞ୍ଚ – ଏକପ୍ରକାର ପଗଡ଼ି ଯେଉଁ ଥିରେ ଅଳଙ୍କାରଯୁକ୍ତ ଥାଏ । ୬୨ । କରକା—କୁଆପଥର ୬୩ । ନୂଆପଦ— ରାୟସାହେବ ରାୟବାହାଦୂର ପ୍ରଭୃତି ଉପାଧି, ୬୪ । ପରିଚ୍ଛଦ—ପୋଷାକ, ୬୫ । ଅକିଞ୍ଚିତକର – ଅତି ହୀନ; ୬୭ । ତୁକସାର—ବକଲାଟିହିଁ ଯାର ସାର ଅର୍ଥାତ୍ ସାରସ୍ଥାନ, ମୂଲ୍ୟସ୍ଥାନ ।

ଏଥିପାଇଁ ଲୋକେ ହୁଅନ୍ତି କି ଭଳି
ମନୁଷ୍ୟତା ହୀନ ସେବାପାଠେ ବଳି

ଉପାଧି-ଲାଳସା-ରୂପୀ ମହାବ୍ୟାଧି
ହୋଇଛି ସାତ୍ତ୍ୱିକ ଧରମର ବାଧା
ଅସାର ଝଟକ ହୋଇଅଛି ସାର,
ଭଣ୍ଡତାର ବଢ଼ିଯାଇଛି ପ୍ରସାର !
କରୁଛନ୍ତି ଲୋକେ ଉପାଧି-ଆଶାରେ

ମନୁଷ୍ୟର ପୂଜା ଷୋଡଶୋପଚାରେ,
ମନୁଷ୍ୟ ତୋଷିବା ପାଇଁ ସହି କଷ୍ଟ
ମନୁଷ୍ୟପଣରୁ ହେଉଛନ୍ତି ଭ୍ରଷ୍ଟ
ପଦପାଇଁ ଲୋକେ ହୋଇ ଲାଳାୟିତ
ତୋଷିବାକୁ ବ୍ୟସ୍ତ ମନୁଷ୍ୟର ଚିତ୍ତ

ଭ୍ରମନ୍ତି ମନୁଷ୍ୟ-ପାଦ ଅନୁସରି
ସେହି ମନୁଷ୍ୟର ପୋଷା ଶ୍ୱାନ ପରି,
ମନୁଷ୍ୟର ସ୍ମିତ,ମନୁଷ୍ୟ- ଭ୍ରୂକୁଟୀ
ହୋଇଛି ଜୀବନ ମରଣର ବୁଟୀ,
ମାନୁଷୀ ଅର୍ଚ୍ଚନା ଲାଗି ଅଗଣନ

୭୦ । ସାରହୀନ ଉପାଧି ପାଇଁ ଲୋକେ ଅଧିହୀନ ଲୋକର ସେବା କରି ମନୁଷ୍ୟତାକୁ ହରାଇଥାନ୍ତି । ୭୨ । ସାତ୍ତ୍ୱିକ —ସତ୍ତ୍ୱମୟ; ୭୩ । ଝଟକ—ଚାକଚକ୍ୟ, ଆଡ଼ମ୍ବର; ୭୪ ।ପ୍ରସାର —ବିସ୍ତୃତି; ୭୬ ଷୋଡ଼ଶୋପଚାର—ଦେବତା ବା ରାଜାମାନଙ୍କୁ ଯେଉଁ ଷୋଳ ପ୍ରକାର ସେବା କରାଯାଏ; ୮୧ । ଅନୁସରି - ଅନୁସରଣ କରି । ୮୨ । ଶ୍ୱାନ—କୁକୁର; ୮୩ । ସ୍ମିତ—ହସ; ଭ୍ରୂକୁଟୀ—ବକ୍ରଦୃଷ୍ଟି; ବୁଟୀ—ଔଷଧ, ୮୫ । ମାନୁଷୀ ଅର୍ଚ୍ଚନା—ମନୁଷ୍ୟର ପୂଜା ।

ରଚନ୍ତି ଯତନେ ପୁଷ୍ପ—ଉପବନ,
ଦେବାପାଇଁ ତହୁଁ ପୁଷ୍ପ ନେଲେ କେହି,
ମାଳିଏ ମରନ୍ତି ଜରମାନା ଦେଇ;
ପବନ ଶ୍ରେ ତ୍ରିସ୍ୱେ ନକତ୍ର ଗୋଦାନ
ଇତରେ ଦଅନ୍ତି କଣି ଦବ୍ୟ ଶ୍ୱାନ, । ୯୦ ।

ତପ୍ତ ବୈତରଣୀ ହେବେ ପରା ପାର
ସେହି କୁକୁରର ହୋଇ ପୁଚ୍ଛଧାରୀ ?
ଧିକ ଧିକ ଆହ୍ୱାନାଣି ଶୁଣି ନରେ
ଶାଶ୍ୱତକୁ ଛାଡ଼ି ଆସକ୍ତ ନଶ୍ୱରେ
ଚଦାକାଶ- ପକ୍ଷୀ ଜାଣିଶୁଣି ମହା- । ୯୫ ।

ଭ୍ରମଜାଲେ ପଡ଼ି ହୁଅନ୍ତି ଆତ୍ମହା
ଜାଣିଶୁଣି ସିନା ବଣିକର ପାଣ୍ଠି
କରନ୍ତି ଭେଲକୁ, ହୁଡ଼ି ସୁନା ଖଣ୍ଡି,
ସତ୍ୱାମୃତ ହୁଡ଼ି ହୁଅନ୍ତି ସକଳେ

---

୮୭ । ଉପବନ—ବଗିଚା । ୮୯—ଶ୍ରୋତ୍ରିସ୍ୱେ—ବେଦଜ୍ଞବ୍ରାହ୍ମଣ ।
୯୦ ଶୁଚମନ୍ତ ବ୍ରାହ୍ମଣଙ୍କୁ ଗୋଦାନ କରିବା ଧର୍ମଶାସ୍ତ୍ରସମ୍ମତ; ମାତ୍ର ଲୋକେ ତାହା ନକରି କ୍ଷମତାଶାଳୀ ଲୋକଙ୍କୁ ବଳଦ କୁକୁର ଉପହାର ଦଅନ୍ତି ।
୯୧—ତପ୍ତବୈତରଣୀ- ମନୁଷ୍ୟ ମୃତ୍ୟୁପରେ ପ୍ରେତରୂପେ ଯେଉଁ ତପ୍ତ ଜଳପୂର୍ଣ୍ଣ ନଦୀ ପାରହୁଏ । ହିନ୍ଦୁଶାସ୍ତ୍ର ଅନୁଯାୟୀ ଗୋଦାନ କଲେ ଏହି ନଦୀ ପାର ହେବା ସହଜ ହୁଏ । ୯୨ । ପୁଚ୍ଛଧାରୀ—ଲାଙ୍ଗୁଡ଼କୁ ଧରି; ଶାସ୍ତ୍ରରେ କଥିତ ଅଛି ଯେ ବ୍ରାହ୍ମଣଙ୍କୁ ଗୋଦାନ କରିଥିଲେ ପ୍ରେତାତ୍ମା ଅକ୍ଲେଶରେ ତପ୍ତ ବୈତରଣୀ ପାର ହୋଇଯାଏ । ୯୪। ଶାଶ୍ୱତ-ଚିରନ୍ତନ, ଚିରସ୍ଥାୟୀ, ନଶ୍ୱର—ଅସ୍ଥାୟୀ; ୯୫ ଚଦାକାଶ—ଚିତ୍ (ଚୈତନ୍ୟ) ରୂପକ ଆକାଶ; ଆତ୍ମହା-ଆତ୍ମଘାତୀ; ୯୯ । ସତ୍ୱାମୃତ—ସତ୍ୱଗୁଣରୂପକ ଅମୃତ ।

*

ନଖଶିଖ ଘାର ରାଜସ ଗରଳେ,

ନଖଶିଖ ଘାର ଥିବାରୁ ଅଜ୍ଞାନ
ଅବସ୍ତୁରେ ହେଉଅଛୁ ବସ୍ତୁଭ୍ରମ ।
ମନୁଷ୍ୟ-ପ୍ରଜାରେ ଯେତେକାଳ ଯାଏ;
ଆତ୍ମତତ୍ତ୍ୱେ ଯେବେ ସେତୁଥିରୁ ପାଏ,
ସାରସାର ବୁଝି ଦେଉଥାନ୍ତେ ଲୋକେ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟ ଲୋକେ, ।

ନିରୁପାଧି-ସତ୍ତ୍ୱା ପୀୟୂଷ ଆସ୍ୱାଦ
ସ୍ୱପ୍ନେ କେହି ଲୋଡ଼ୁ ନଥନ୍ତେ ଉପାଧି;
ହେଉଥାନ୍ତା ସିନା ଅକ୍ଳେଶେ ଅର୍ଜନ
ଏମର୍ତ୍ତ୍ୟ ଜୀବନେ ଅମର ଜୀବନ;

ହେଉଥାନ୍ତା, ଆହା, ମର୍ତ୍ତ୍ୟେ ବଣ୍ଟଗେହେ
ଦେବତା ମାନବ ଏହି ମର୍ତ୍ତ୍ୟଦେହେ ।
ମଞ୍ଚପାଶେ କପିଁ । ଏତେ ଲୋକ ଠିଆ ?
ଲାଗିଅଛୁ ପଗ୍ର ଆସନ କଳିଆ !

---

୧୦୦ । ରାଜସଗରଳ—ରଜୋଗୁଣ ରୂପକ ବିଷ, ନଖଶିଖ—ଆପାଦ ମସ୍ତକ; ୧୦୨ । ଅବସ୍ତୁରେ...ଭ୍ରାନ—ଯାହା ଅପଦାର୍ଥ ତାକୁ ପଦାର୍ଥ ବୋଲି ଭ୍ରମକରୁଛନ୍ତି; ଭ୍ରାନ – ଭ୍ରମ; ୧୦୪ । ଆତ୍ମତତ୍ତ୍ୱ—ଆଧ୍ୟାତ୍ମିକ ଚିନ୍ତା ; ।୧୦୩ । ଲୋକେ ମନୁଷ୍ୟପ୍ରଜାରେ ଯେତେ ସମୟ କଟାନ୍ତି, ତାହାର ଚତୁର୍ଥାଂଶ ଆଧ୍ୟାତ୍ମିକ ଚିନ୍ତାରେ କଟାଉ ଥିଲେ, ପୃଥିବୀ ସ୍ୱର୍ଗରାଜ୍ୟରେ ପରିଣତ ହୁଅନ୍ତା: ୧୦୭ । ନିରୁପାଧି ସତ୍ତ୍ୱା—ଉପାଧିହୀନ (ବ୍ରହ୍ମ)ର ଅସ୍ତିତ୍ୱ; ପୀୟୂଷ—ଅମୃତ; ୧୦୯ । ଅକ୍ଳେଶେ—ସହଜରେ; ୧୧୧ । ଗେହ—ଗୃହ ୧୧୨ । ମନୁଷ୍ୟ ଏହି ମରଣଶୀଳ ଦେହକୁ ଧରି ମଧ୍ୟ ଦେବତା ପଦବାଚ୍ୟ ହୁଅନ୍ତା;

ନିଜ ଅହମିକା-ସଦୃଶ ଆସନ
ନଦେଖି ଥୋକାଏ ମହା କ୍ଷୁଣ୍ଣମନ,
ଔପାଧିକ ରାଜା ଉଚ୍ଚାସନେ; ରୁଷି
କ୍ଷୁଣ୍ଣ ହେଉଛନ୍ତି ରାଜା ମଉରୁଷି,
ଆସନ ସକାଶେ ବୃନ୍ଦେ ଏତେ ବାଇ !
ବାଳକେ ଯେସନେ କ୍ରୀଡ଼ନକ ପାଇଁ !

ଲଡ଼ୁ ଲାଗି ଯଥା ଯୁଝୁଥାନ୍ତି ପିଲ୍ଲ !
କେତେବୃନ୍ଦେ କରୁଛନ୍ତି ବାଳଲୀଳା !
କେହୁ ବୋଲେ "ମୁହିଁ ଉଚ୍ଚପଦ ଧାରୀ,
ଉଚ୍ଚଆସନର ମୁହିଁ ଅଧିକାରୀ"
ଆନ ବୋଲେ, "ମୁହିଁ ଉଚ୍ଚ ବଂଶଧର,

ତୁ ସିନା ଅଟେଇ ଧନର ଗୁକର !
ବଡ଼ ସିନା ତୁମ୍ଭ ରାଜଦଣ୍ଡ ମାନେ,
ମାଣ ତୋର କାହିଁ ନାହିଁ ଭୂମି ମାଣେ !
ମୋତେ କେ ନଜାଣେ ଏ ମହୀମଣ୍ଡଳେ ?
ମୋର ଏ ଆସନ କିପାଁ ହେଲା ତଳେ ?

ଆନ ବୋଲେ, "ମୁହିଁ ପାଇକର ନାହା,
ବାପଦେ ରାଜାର ଆଜ୍ଞା ମୋର ବାନ୍ଧା,



---

୧୧୫ । ଅହମିକା—ବଡ଼ପଣ, ଅହଂଭାବ, ୧୧୭—୧୮ ଔପାଧିକରାଜା—ଯେ ସରକାରଙ୍କ ପ୍ରଦତ୍ତ ଉପାଧି ଦ୍ୱାରା ରାଜା ବୋଲଉଛନ୍ତି; ମଉରୁଷି ରାଜା—ଯେ ବଂଶାନୁକ୍ରମେ ରାଜା ବୋଲାଇ ଆସୁଛନ୍ତି; ୧୨୦ । କ୍ରୀଡ଼ନକ—ଖେଳନା; ୧୨୯ । ମହୀମଣ୍ଡଳେ—ସାରା ପୃଥିବୀରେ, ୧୩୧ । ପାଇକର ନାହା—ପାଇକ ମାନଙ୍କର ସର୍ଦ୍ଦାର, ସେନାପତି ।

ଏହି ହସ୍ତେ କେତେ ମସ୍ତକ ଗଡ଼ାଇ,
କେତେ କେତେ ଗ୍ରାମ ଦେଇଛୁ ପୋଡ଼ାଇ,
ସଂଗ୍ରାମେ ପଦକ ଦେଲେ ମୋତେ ଗୁଣୀ, ।

ମୋହଠାରୁ ପୁଣି କିଏ ବଡ ମାନୀ ?
ଆନ ବୋଲେ, "ମୁହିଁ ଅଟଇ ପୁଲିସ,
ବିନାମେଘେ ସୃଜି ପାରଇ କୁଳିଶ,
କି ଦୋଷୀ, କି ଅବା ଦୋଷହୀନ ନର
ମୋ ପ୍ରତାପେ ରାଜ୍ୟ ସର୍ବେ ଥରହର ।

କିବା ଦୁଃଖୀ ରଙ୍କୀ, କୋଟିପତିଏ
ଲାଲ-ପଗଡ଼ିକି ନଡରନ୍ତି କିଏ ?
ମୋତେ ଦେଖି କିଏ ନଭଜେ କମ୍ପକୁ ?
କିଏ ନଡରଇ ଉତ୍‌ଫଣ ଡମ୍ଫକୁ ?
ରାଜାଙ୍କ ଅଟଳ ବିଶ୍ୱାସ ମୋଠାରେ, ।

ମୋହଠାରୁ କିଏ ବଡ଼ ଦରବାରେ ?
ଆନ କହେ, "ମୁହିଁ ନଗର-ରକ୍ଷଣୀ—
ସହର ସଦସ୍ୟ ଦଳର ଅଗ୍ରଣୀ,
ଲାଟଙ୍କର ହେଲେ ଶୁଭ ଆଗମନ,
ସର୍ବାଗ୍ରେ କରନ୍ତି ମୋ ପୂଜା ଗ୍ରହଣ, ।

---

୧୩୫ । ସଂଗ୍ରାମ—ଯୁଦ୍ଧ, ୧୩୮ । କୁଳିଶ-ବଜ୍ର, ବିନାମେଘେ···କୁଳିଶ-ମେଘ ନଥାଇ ମଧ୍ୟବଜ୍ର ସୃଷ୍ଟି କରି ପାରେ । ଏଠାରେ ଇଂରେଜ ଅମଳର ପୁଲିସମାନଙ୍କ ଅନ୍ୟାୟ ଅତ୍ୟାଚାର ପ୍ରତି କଟାକ୍ଷ କରାଯାଇଅଛି, ୧୪୦ । ପ୍ରତାପ—ପରାକ୍ରମ, ୧୦୨ । ଲାଲପଗଡ଼ି—ଲାଲପଗଡ଼ି ପରିହିତ ପୁଲିସ କର୍ମଚାରୀ ୧୪୪। ଉତ୍‌ଫଣ-ଫଣା ଟେକିଥିବା, ଡମ୍ଫ-ସର୍ପବିଶେଷ, ୧୪୭ । ନଗର···ଅଗ୍ରଣୀ-ବଡ଼ ବଡ଼ ସହରର ମେୟର ବା ମିଉନିସିପାଲିଟି ଚେୟାରମ୍ୟାନ୍ ।

ମୋର ହସ୍ତେ ନ୍ୟସ୍ତ ନଗରର ଶୁଭ,
ସମ୍ମାନେ ମୋହର ସର୍ବୋପରେ ଦାବ ।"
କେହି ବୋଲେ, "ମୁହିଁ ଅଟଇ ଦ୍ୱିପ୍ରୋଟୀ'
କଳା ଲୋକଙ୍କର ଉନ୍ନତର କୋଟୀ
ଲଭିଅଛୁ ମୁହିଁ ବଳେ କଉଶଳେ,

ମୋ'ତେ ପୁଣି କିଏ ବସାଇବ ତଳେ ?
ଲେଖି ଷେଳେ ଯଥା ସ୍ୱମର୍ଯ୍ୟାଦା ଜାଗି
ପ୍ରତିବାସି ପଣେ କହେ 'ଦେବାଲାଗି,
କେହି ଅବା ନିଜ ଦୁଃଖକୁ ଘୋଡ଼ାଇ
ପ୍ରତିବାସୀ ଦୁଃଖ ଗାଇ ହେଉଥାଇ,

କହେ, "ନ୍ୟାୟ ନାହିଁ ଏହି ଦରବାରେ,
ତା ଆସନ ଭୂମି ଆଗେ କି ବସ୍ତୁରେ ?"
ସର୍ବପତିଙ୍କର ଖଟଣୀ କଙ୍କର,
ବୋଲି କେହି ହେଉଛନ୍ତି ଫରଫର,
ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ ।
ସେ ଯେଣୁ ଅଟନ୍ତି ଶିବଙ୍କର ସାପ !

---

୧୫୩-୫୪ । ଇଂରେଜ ଶାସନ କାଳରେ ଭାରତୀୟମାନେ ଉଚ୍ଚ ରାଜ କାର୍ଯ୍ୟରେ ନିଯୁକ୍ତ ହୋଇ ପାରୁନଥିଲେ । କୌଣସି ଭାରତୀୟ ଡେପୁଟି ମାଜିଷ୍ଟ୍ରେଟ ହୋଇ ପାରିଲେ ଉନ୍ନତିର ଶେଷ ସୀମାକୁ ଯାଇଛୁ ବୋଲି ମନେ କରୁଥିଲେ । କୋଟୀ — ଶୀର୍ଷଦେଶ, ୧୫୮ । ପ୍ରତିବାସୀ – ପଡ଼ଶା, ୧୬୪ । ଖଟଣୀ-କଙ୍କର —ଖେଷେଇଆ, ଚାକର; ୧୬୫—୬୬ । ଗରୁଡ-ସର୍ପମାନଙ୍କୁ ଭକ୍ଷଣ କରେ, ତେଣୁ ସର୍ପମାନେ ଗରୁଡ଼କୁ ଭୟ କରନ୍ତି କିନ୍ତୁ ଯେଉଁ ସାପମାନେ ଶିବଙ୍କ ପାଖରେ ଆଆନ୍ତି, ସେମାନେ ଗରୁଡ଼କୁ ଲବ ମାତ୍ର ଖାତିର କରନ୍ତି ନାହିଁ । ସେହିପରି ଉଚ୍ଚ କର୍ମଚାରୀଙ୍କ ଚାକରମାନେ ଅନ୍ୟମାନଙ୍କ ଉପରେ ଆଧିପତ୍ୟ ଦେଖାନ୍ତି ।

ସବୁଦେଶେ, ସବୁକାଳେ ଊର୍ଦ୍ଧ୍ୱମୁହାଁ ।
ହୋଇଥାନ୍ତି ସିନା ଶ୍ରୀଗୁମୁ—ଗୁମୁଆ ।
ଲଗିଛି ଏ ରୂପେ ଅହମିକା ଖେଳ,
ଅହମିକା—ସିନ୍ଧୁ ହୋଇଛି ଉଦ୍‌ବେଳ,
ଅହମିକା-ବାୟୁ-ଗ୍ରସ୍ତ ହୋଇ ବ୍ୟସ୍ତେ
"ମୁଁ" "ମୁଁ" କରି, ଆହା, ମରନ୍ତି ସମସ୍ତେ ।
ଘୋଟିବାରୁ ଘୋର ରଜୋରୂପି ବ୍ୟାଧି
ଉପାଧିରେ ବୁଡ଼ି ଲୋଡ଼ନ୍ତି ଉପାଧି !
"ମୁଁ" ଭାବେ ଜଡ଼ିତ ଅମର ଚିତ୍-କଣା
ଦେଖାଉଛି ଭବେ ଅସଂଖ୍ୟ ପେଖନା !
ଲଭଇ ଲାଞ୍ଛନା, ଆହା କେତେ ରୂପେ,
ପଡ଼ି ଅହମିକା-ରୂପୀ ଅନ୍ଧକୂପେ !
ପିନ୍ଧି ନୂଆ ଚକଚକିଆ ପୋଷାକ
ଥୋକାଏ ବହନ୍ତି ମନେ ବଡ ଜାଁକ;
ଭ୍ରମନ୍ତି ରୌଦରେ ଅଙ୍ଗଭଙ୍ଗୀ କରି
ଅହମିକ-ବନେ ପ୍ରଜାପତି ପରି,
କିମ୍ବା ଘନ କାଳେ ଉଚ୍ଚ ବର୍ହତୋଳି
କେକୀ ନାଚେ ଯଥା ଦେହଲି ଦୋହଲି ।

---

୧୬୮ । ଶ୍ରୀଗୁମୁ ଗୁମୁଆ—ରାଜାଙ୍କ ପାଖଲୋକେ; ଊର୍ଦ୍ଧ୍ୱମୁହାଁ—ଉପରମୁହାଁ ଅର୍ଥାତ୍ ଉଦ୍ଧତସ୍ୱଭାବ; ୧୭୦ । ଅହମିକା...ଉଦ୍‌ବେଳଅହଙ୍କାର ରୂପକ ସମୁଦ୍ର ଉଚ୍ଛୁଳି ଉଠୁଛି; ୧୭୩ । ରଜୋରୂପୀବ୍ୟାଧି-ରଜୋଗୁଣ ରୂପକ ରୋଗ ବା ରାଜସିକତା; ୧୭୬ । ଅମର ଚିତ୍‌କଣା—ଚିତ୍‌ଶକ୍ତି ଯାହା ଅମର ଅଟେ, ଜୀବାତ୍ମା, ୧୭୬ । ପେଖନା-ଛଳନା ୧୭୭-୭୮ । ଚିତ୍‌ଶକ୍ତି ଅହମିକାଗ୍ରସ୍ତ ହେଲେ ଲାଞ୍ଛିତହୁଏ, ୧୮୦ । ଜାଁକ—ବଡ଼ପଣ, ଅଭିମାନ, ୧୮୩ । ଘନକାଳେ—ବର୍ଷାକାଳରେ, ୧୮୪ । ବର୍ହ-ପୁଚ୍ଛ ୧୮୫ । କେକୀ—ମୟୂର ।

ସାହେବୀ ପୋଷାକ କେହୁ ଅବା ପିନ୍ଧି ।
ସସ୍ମିତେ କହୁଇ ବଙ୍କା ବଙ୍କା ବୁଲି,
ଅରେ ଅରେ କାସି ସାହେବୀ ଠାଣିରେ
ପୋଛଇ ବଦନ ରୋମାଲ୍ କାନରେ,
ପ୍ରକଟାଇ ପୂରା ସାହେବୀ ପଣିଆ
ଫରକଟା ଗୋଡ଼େ ହୁଏ ପୁଣି ଠିଆ ! ।

ମିଶି ଘଷିଥିବା ବସିକା ସେସନ
କରୁଥାଇ ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ,
କୁଣ୍ଡଳ ଦେଖାଇ ହେବା ଅଭିପ୍ରାୟେ
କୁଣ୍ଡଳୀ ଯେସନେ ମୁଣ୍ଡକୁ ହଲାଏ,
ସମସ୍ତ ଜାଣିବା ମିଛ ବାହାନାରେ ।

ଘଡ଼ି କାଢ଼ି କେହୁ ଦେଖାଏ ବାହାରେ ।
ନାନା ଅଲଙ୍କାର କରେ ଝଲମଲ,
ନବ୍ୟ ଘଡ଼ିଚେନ, ପ୍ରାଚୀନ କୁଣ୍ଡଳ
ହୃଦେ ଲମ୍ବମାନ ସୁବର୍ଣ୍ଣ ତକମା
ନାସିକା-ଶୋଭନ ସୁବର୍ଣ୍ଣ ଚଷମା. ।

କେତେ ରଙ୍ଗ କରୁଛନ୍ତି କେତେଜଣ,
କହିଲେ ନସରେ-ନର ଫୁଲ୍ଲପଣ,

---

୧୮୭ । ସସ୍ମିତେ—ଅଳ୍ପ ହସିହସି; ୧୮୯ । ପ୍ରକଟାଇ—ପ୍ରକାଶକରି; ୧୯୧ । ମିଶି-ଦାନ୍ତ ପଚେଇବାର ଏକ ପ୍ରକାର ଚୂର୍ଣ୍ଣ; ବସିକ-ବିଳାସୀ ଲୋକ; ଯେଉଁମାନେ ଦାନ୍ତରେ ମିଶି ଘଷିଥାନ୍ତି, ସେମାନେ ଦାନ୍ତର ସୌନ୍ଦର୍ଯ୍ୟ ଦେଖାଇବା ପାଇଁ ଚେଷ୍ଟିତ ହୁଅନ୍ତି, ୧୯୪ । କୁଣ୍ଡଳୀ—କୁଣ୍ଡଳ ପିନ୍ଧିଥିବା ଲୋକ, ୧୯୮ । ନବ୍ୟ ଆଧୁନିକ, ପ୍ରାଚୀନ—ପୁରୁଣା, ୧୯୯ । ତକମା—ପଦକ; ୨୦୨ । ଫୁଲ୍ଲପଣ—ଗର୍ବ ।

ଘାଉଅଛୁ ପ୍ରଭୁଜନେ ଯେଉଁ ନିଶା
କଣ୍ଠର କଥାରେ କି ଘୋର ଜିଗୀଷା !
ଅକିଞ୍ଚନ କେହୁ କହେ ହାତ ଯୋଡ଼ି, । ।୧୦୫।
"ବୃଥା ଲାଗ କମ୍ପାଁ କାମୋଡ଼ା କାମୋଡ଼ି ?
ଅଳ୍ପଧନ ସ୍ଥିତିପାଇଁ ଭବଚଟି,
ଏଥିଲାଗି କମ୍ପାଁ ଏତେ କଟାକଟି ?
ମଣସିନା ଆପଣାକୁ ବଡ଼ କରି,
ମାଛି କଥା—ବୃଷ ଦେହେ ମଶା ପରି । ।୧୧୦।
ମହୀରେ କାହାର ପ୍ରବେଶ ପ୍ରୟାଣେ
ଓଜନ ଉଶ୍ୱାସ ମହୀତ ନ ଜାଣେ !
ଦେଖ ସାବଧାନେ ଜ୍ଞାନ-ନେତ୍ର ଫେଇ,
ତୁମ୍ଭମଧ୍ୟେ ସାନ ବଡ଼ ନାହିଁ କେହି,
ସାନ ବଡ଼ ଜ୍ଞାନ ଭେକର ଭିଆଣ ।୧୧୫।
ଭେକ ଚଳେ କେହି ନାହିଁ ବଡ଼ ସାନ ।
ଜଣେ ଜଣେ ଗୋଟି ଗୋଟିଏ ସୁଆଙ୍ଗ,
ସ୍ଥୂଳଶିବ ଭବଲୀଳା ହେଲେ ସାଙ୍ଗ,
ସର୍ବେ ଶିବ, ଖଇ, ଉଭେଇ ଅଚିରେ,
ବୁଦ୍‌ବୁଦ ପର୍ଯ୍ୟନ୍ତ ଏହି ନଦୀ-ନୀରେ ! ।୧୨୦।

---

୧୦୪ । ଜିଗୀଷା—ଜୟ କରିବାର ଇଚ୍ଛା, ୧୦୫ । ଅକିଞ୍ଚନ—ଅତି ଦରିଦ୍ର, ୧୦୬ । ବୃଥା—ଅକାରଣରେ, ୧୦୭ । ଭବଚଟି—ସଂସାର ରୂପକ ଚଟିଘର, ୧୧୦ । ବୃଷ ଦେହେଁ ମଶା ପରି—ଷଣ୍ଢ ଉପରେ ମଶାଟିଏ ବସିଥିଲେ ସେ ନ ଜାଣିଲା ପରି, ୧୧୧ । ପ୍ରବେଶ ପ୍ରୟାଣ-ଜନ୍ମ ମରଣ, ୧୧୩ । ଜ୍ଞାନ-ନେତ୍ର ଫେଇ-ଜ୍ଞାନ ରୂପକ ଚକ୍ଷୁକୁ ଫିଟାଇ, ୭୧୫ । ଭେକ-ପୋଷାକ, ୧୧୮ । ସାଙ୍ଗ-ଶେଷ । ୧୧୮ । ଭବଲୀଳା —ସଂସାରଲୀଳା ୧୧୯ । ଅଚିରେ—ଅବିଲମ୍ବେ, ୧୨୦ । ବୁଦ୍‌ବୁଦ— ପାଣିଫୋଟକା ।

ଅଖଣ୍ଡ-ଦଣ୍ଡାୟମାନ-କାଳସିନ୍ଧୁ
ମଧ୍ୟେ ବିନ୍ଦୁ ରହି ନୁହ ଏକ ବିନ୍ଦୁ ।
ମାଟି-ଘଟେ ବୃଥା ବହି ଅଭିମାନ
ଅଜ୍ଞାନେ ଧରିଛ କର ଶରୀଜ୍ଞାନ ।
ଅଜ୍ଞାନେ ନଶ୍ୱର ଭାଗ୍ୟର ଗରବେ

ଭାଳ ତୁମ୍ଭେ ଡମି, ସଫରୀ ସରବେ ।
ସପ୍ତବିଚନ୍ଦ୍ରିର କୀଟ ହୋଇ ଭାଇ,
ବୃଥା କର କିଁପା ଭାଗ୍ୟର ବଡ଼ାଇ ?
ବୃଥା କର କିଁପା ସମ୍ପଦେ ବିଶ୍ୱାସ ?
ବିଜୁଳି ପ୍ରାୟ ଯା ବିଭବର ବିକାଶ,
ସୁଖ ଝଟକେ ଯେ ଚକ୍ଷୁ ଚମକାଇ,
ଦୁଃଖ-ବଜ୍ରେ ପରେ କରେ ଧରାଶାୟୀ,
ବୃଥା ବହି ଏହି ଭଙ୍ଗୁର ରୋଗଭୂ
ମଣ ଆପଣାକୁ ଜଣେ ଜଣେ ପ୍ରଭୁ !
ରୋଗବ୍ୟାଜେ କାଳ ଥରେ ଥରେ ଚୂଟି
ଝିଙ୍କିଦେଲେ, ଏହି ଦର୍ପଯାଏ ତୁଟି,

---

୧୧୧-୧୨ । କାଳରୂପକ ସମୁଦ୍ର ମଧ୍ୟରେ ମନୁଷ୍ୟର ସତ୍ତା ଏକ ବିନ୍ଦୁ ସଙ୍ଗେ ସୁଦ୍ଧା ତୁଳନୀୟ ନୁହେ; ୧୧୩ । ମାଟିଘଟ—ମାଟିର ଶରୀର, ୧୧୫ । ନଶ୍ୱର ଭାଗ୍ୟ—ମନୁଷ୍ୟର ସୌଭାଗ୍ୟ ଅତି କ୍ଷଣସ୍ଥାୟୀ, ୧୧୬ । ସଫରୀ—ଦଣ୍ଡିକିର ମାଛ, ୧୧୭ । ସପ୍ତବିଚନ୍ଦ୍ରି—ସାତଗୁଖଣ୍ଡ, ମନୁଷ୍ୟର ଉଚ୍ଚତା ତା ହାତରେ ସାତଗୁଖଣ୍ଡ; ୧୨୦ । ବିଭ—ତେଜ, ୧୨୨ । ଭଙ୍ଗୁର—ଯାହା ନଷ୍ଟ ହୋଇଯାଏ, ରୋଗଭୂ—ରୋଗର ଆଧାର; ଅର୍ଥାତ୍ ଶରୀର, ୧୨୫ । ରୋଗବ୍ୟାଜ—ରୋଗଚ୍ଛଳନା, ୧୨୬ । ଦର୍ପ—ଅହଙ୍କାର ।

*

ଦର୍ପ ତୁଟେ କ୍ଷଣେ ଭେଟେ ବାପଦର,
ହାବୋଡ଼େ ଆସି ସେ ନଦେଇ ଖବର,
ଅବଧିକ ସେହ ଦର୍ପ ତୁଟି ନାହିଁ ?
ଲଢୁଛ କାପର, କିବା କଥା ପାଇଁ ?
କେତେଦିନ ଲାଗି ମର୍ତ୍ତ୍ୟେ ଅବା ଘର ?
ଏଥିଲାଗି କିପାଁ ଏତେ ଆଡ଼ମ୍ବର ?
ମର୍ତ୍ତ୍ୟେ ପଡ଼ି କାନ୍ଦ ଲୋଡ଼ ଦୁଧ ଟୋପା,
ଯିବାବେଳେ ଛଅଖଣ୍ଡି କାଠ ଲୋଡ଼ା,
ମଧ୍ୟେ କେତେଦିନ ମାତର କୁଣିଆ,
ଏଥିପାଇଁ ପୁଣି ନଅଣ୍ଟେ ଦୁନିଆ !
କେତେଦିନ-ପାଇଁ ଦର୍ପର ପତାକା
ଟେକି ଦେଉଥିବ, ଆଉଥିବ ଧକା ?
ଏହି ଦରବାରେ ଲୁଣ୍ଠି ଯେତେ ନରେ,
ଏଥିରୁ ଥୋକାଏ ବର୍ଷକ ଭିତରେ

ଅନ୍ୟ ଦରବାରେ ହେବେଟି ତଲବ,
ତୁମ୍ଭେ ତହିଁ ଥିବା ନୋହେ ଅସମ୍ଭବ ।
ସେ ଦାରୁଣ ଦରବାରେ ଯିବାପାଇଁ
ଗାଡ଼ି ଘୋଡ଼ା ଆଦି ଲୋଡ଼ା ହେବ ନାହିଁ ।
ପାଇକ ସ୍ୱରୂପେ ଆସି ରୋଗ ନାନା
ଦେଖାଇବେ ତଲବର ପରବାନା,

---

୧୩୯। ଅବଧି—ଏପର୍ଯ୍ୟନ୍ତ ୧୪୪। ଯିବାବେଳେ—ମରି ପୃଥିବୀରୁ ଗଲାବେଳେ, ଛଅଖଣ୍ଡି କାଠ-ଯେଉଁ କୋକେଇରେ ମୁର୍ଦାର ନିଆଯାଏ ତାହା ଛଅଖଣ୍ଡି କାଠରେ ତିଆରି ହୋଇଥାଏ, ୧୫୧। ଅନ୍ୟ ଦରବାର—ଯମରାଜାଙ୍କ ଦରବାର ।

୧

ତଲବ ନୁହଇ, ୱାରେଣ୍ଟ ସିନା ସେ !
ନଦେବେ ମାଗିଲେ ମହଲତ ମାସେ
କରିବା ପାଇଁ, ନୋହୁ ବ୍ୟତିବ୍ୟସ୍ତ,
ଘରବାଡ଼ି ଜମି ଜମା ବନ୍ଦୋବସ୍ତ । ୧୬୦ ।

ଆର୍ତ୍ତି-ଦାର ସୁତ-ସ୍ୱେଦନେ ମୁଖର
ସ୍ନେହକାରି-ଜନ-ନେତନେ ଜର୍ଜର,
ମୃତ୍ୟୁଶଯ୍ୟା, ଅଣଶ୍ୱାସ ଲୀଳାସ୍ଥଳୀ,
ସେ ଦରବାରରଙ୍ଖିପଣ ଦେହଳୀ !
ଅଭ୍ରାନ୍ତ ଘଟିକା-ଯନ୍ତ୍ର ବାମ କରେ, । ୧୬୫ ।

ଭୀମ କାଳଦଣ୍ଡ ଧରି ବାମେତରେ,
ସେହି ବୈଶ୍ୱାନର ଦରବାରେ ବସେ –
ପ୍ରେତପତି ସର୍ବପତି ରୂପେ ବିଜେ !
ଥରେ ମନେକର ସେହି ଦରବାର;
କି ଭଲ ଆସନ ଲଭିବ ସେଠାର, । ୧୭୦ ।
କି ଭଲ ପୋଷାକ ଲୋଡ଼ା ହେବ ତହିଁ,
ଲଭିବ ସମ୍ମାନ କେଉଁ ଗୁଣ ବହି ?

---

୧୫୮। ତଲବ ବା ସମନ ହେଲେ ଆସାମୀ ମହଲତ ନେଇପାରେ ମାତ୍ର ଓ୍ୟାରେଣ୍ଟ ( warrant ) ହେଲେ ଆସାମୀକୁ ତତ୍କ୍ଷଣାତ୍ ଧରି ନିଆଯାଏ ୧୬୧। ଆର୍ତ୍ତି—ଦୁଃଖପୂର୍ଣ୍ଣ। ଦାର—ପତ୍ନୀ ସ୍ୱେଦନ—କ୍ରନ୍ଦନ ୧୬୨ । ଜର୍ଜର—ଆର୍ଦ୍ର । ୧୬୩। ଅଣଶ୍ୱାସ—ମୃତ୍ୟୁ ସମୟରେ ନିଶ୍ୱାସ ୧୬୪ । ଦେହଳୀ—ଏରୁଣ୍ଡି ବନ୍ଧ ପ୍ରବେଶପଥ ୧୬୫। ଅଭ୍ରାନ୍ତ ଯାହାଁ କେବେ ଭୁଲନ୍ତୁ ନାହିଁ, ଘଟିକାଘଡ଼ି ୧୬୬। ବାମେତର—ଡାହାଣ ୧୬୭। ବୈଶ୍ୱାନର —ବୈଶ୍ୱାନର ସମ୍ବନ୍ଧୀୟ ଅର୍ଥାତ ସର୍ବଜନୀନ, ୧୬୮। ପ୍ରେତପତି—ଯମରାଜ।

ଏ ଦରବାରର ଆସନ ଫରଦ
ଚନ୍ଦ୍ରଗୁପ୍ତ-ପାଞ୍ଜି କରଦେବ ରଦ୍ଦ ।
ତୋତେ ଦେବେ ଅବା ଦଣ୍ଡେବେ ସେ ନ୍ୟାସ୍ତ. । ୧୭୫ ।

ଚରମ ଅଟଇ ଚନ୍ଦ୍ରଗୁପ୍ତ ରାସ୍ତ !
ନଥିବେ ଓକିଲ ଲଢ଼ି ଯେ ମାମଲା
କରଦେବେ ଯୁକ୍ତି ବଳେ କଳା ଧଳା
କରିବୁ ନାହିଁଟି ସ୍ୱପନେ ଏ ପାଞ୍ଚ
ଲଢ଼ିବ ନେବୁ ଚହିଁ ଦେଇ ଲାଞ୍ଚ । ୧୮୦ ।

କେଜାଣି ବସିବ ତୋତେ ପାଦେ ଦଳି
ତୋହର ଉପରେ ତୋର ଅରଦଳି
ସେ ଦରବାରେ ତ ଗଣା ହେବ ନାହିଁ
ଉଚ୍ଚପଦ ତୋର କମ୍ବା ଦରମାହି
କମ୍ବା ଭୂସମ୍ପତ୍ତି କମ୍ବା ରାଜପଣ । ୧୮୫ ।

କମ୍ବା ବଦ୍ୟା, କିମ୍ବା ବୁଦ୍ଧି ବଚକ୍ଷଣ,
ହଇଲ୍ ସେନ ଘରୁ ସୁଆର ଅଣଇ
କେତେକେତେ ଭୋଜି ଦେଇଅଛୁ ଖାଇ
ଦେଇଅଛୁ ଡାଲି ଭରି ମେବା ନାନା
କେତେଥର ଦେଇଅଛୁ ନାଚଖାନା । ୧୯୦ ।

---

୧୭୬। ଚନ୍ଦ୍ରଗୁପ୍ତ-ଯମରାଜାଙ୍କ ମନ୍ତ୍ରୀ ସେ ପ୍ରତ୍ୟେକ ଲୋକର ଧର୍ମାଧର୍ମର ହିସାବ ରଖନ୍ତି ୧୭୭।୭୮। ବଚାରାଳୟରେ ଓକିଲମାନେ ଯୁକ୍ତି ଦେଖାଇ ସତ୍ୟକୁ ମିଥ୍ୟା ଓ ମିଥ୍ୟାକୁ ସତ୍ୟ ବୋଲି ପ୍ରମାଣ କରଥାନ୍ତି ୧୮୨। ଅରଦଳି —ପିଅନ ( Orderly ); ୧୮୭।ଇଉଲସେନ—ସାହେବୀ ହୋଟେଲ ମାଲିକ ସୁଆର —ସୁଆଁର ଖାନସାମ ୧୮୯। ଡାଲି—ଭେଟି ମେବା—ଫଳ ପନିପରିବା ।

ହୁଃଖି-ରଙ୍କି-ତଣ୍ଟି ଚିପି ବାରମ୍ବାର
ଦାତାପଣ କେତେ କରୁଛ ପ୍ରଗ୍ଭର !.
ସମ୍ପାଦିବା ଲାଗି ଜନତାର ପ୍ରୀତି
ଭୋଜପରେ ଭୋଜ ଦେଉଅଛ ନିତି,
ନୀତି ମୁଣ୍ଡ ଖାଇ ନଗ୍ଭୁଅଛ ବାଇ,

ଫୁଟାଉଛ ବାଣ ଚକ୍ଷୁ ଚମକାଇ,
ମୂର୍ଖ ଜନେ ଭୁଲି ନାଟ ଦେଖି କାବା,
ଜନତା କୁହାଟେ "ବାହ୍‌ବା, ବାହ୍‌ବା"
ବହୁବ୍ୟସ୍ତେ ଏହୁ ବହୁଶୀର୍ଷ ପଶୁ
ତୋଷି ପିନା ଖାଲି କୁଟୁଅଛ ଚକ୍ଷୁ

ଅଚେଇ ବଣଆ ଯଶ ଲଗି ବାଇ
ହୋଇ ବୃଥା କାର୍ଯ୍ୟେ ଲାଗିଛ କପାଇଁ ?
ଭାଳିଛ ପଗ୍ଭ ଏ କଥା ମର୍ତ୍ତ୍ୟେ ନର
ଗାଇବେ ଯାବତ ଚନ୍ଦ୍ର ଦିବାକର ?
ଭାଳିଛ ପଗ୍ଭ ଏ ଦୀପ ନ ଲିଭିବ,
ବିସ୍ମୃତି ଅନ୍ଧାରେ ସଦା ଜଳୁଥିବ !

---

୨୯୫ । ନୀତି ମୁଣ୍ଡ ଖାଇ-ନୈତିକତାକୁ ଧ୍ୱଂସ କରି,ବାଇ—ବେଶ୍ୟା; ୨୯୯। ବହୁଶୀର୍ଷ ପଶୁ-ବହୁ ମସ୍ତକ ବିଶିଷ୍ଟ ପଶୁ, ଜନତାକୁ ଏଠାରେ ଲକ୍ଷ୍ୟ କରି ଯାଇଅଛୁ, କାରଣ ଜନତା ବହୁ ଲୋକଙ୍କର ସମଷ୍ଟି ଓ ସେମାନଙ୍କର ନୀତିଜ୍ଞାନ ନ ଥାଏ, ୩୦୪ । ଯାବତ ଚନ୍ଦ୍ର ଦିବାକର—ଚନ୍ଦ୍ର ସୂର୍ଯ୍ୟ ଥିବା-ଯାକେ, ୩୦୫-୬ । ଭାଳିଛ···ଜଳୁଥିବ-ଯେଉଁମାନେ ବହୁବ୍ୟୟ କରି ଜନତାର ପ୍ରଶଂସା ପାଇଥାନ୍ତି, ସେମାନେ କଅଣ ମନେକରି ଅଛନ୍ତି ଯେ ଲୋକେ ଆଉସବୁ ଭୁଲିଯିବେ, କେବଳ ତାଙ୍କର ଆଡ଼ମ୍ବର କଥା ମନେ ରଖିବେ ?

ଲେଖୁଅଛୁ ନିଜନାମ ଏହିମତେ
ବାଲି ପ୍ରାୟ କାଳସିନ୍ଧୁ-ସଇକତେ,
ଲିଭାଇ ଦେବ ଯା ପରକ୍ଷଣେ ଆସି
ନାଚ ନାଚ ଫେନ ଚୂଡ଼-ଜଳରାଶି, ॥ ୩୧୦ ॥

ବୃଥା କରୁଅଛୁ ଅସାର ଆଟୋପ,
ଛତାକ ପ୍ରାୟ ଯା ହୋଇଁ ଭଜେ ଲୋପ,
ବୃଥା ଲୋଡ଼ ହେଉଅଛୁ ଆତ୍ମଘାତୀ
ଦୁନିଆର ଦୁଇଦିନିଆ ସୁଖ୍ୟାତି !
ଜନଚାର ଯଶ ପାଣିର ଫୋଟକା ! ॥ ୩୧୫ ॥

ସ୍ୱର୍ଗ ତୁମେ କଣ ଲୋଡ଼ୁଛ କରକା ?
ସାରମଣି କପା ଅସାର ଧନକୁ ?
ତାରାମଣି କପା ଜ୍ୟୋତିରିଙ୍ଗଣକୁ :
ଏ ଯଶ ତୁମ୍ଭର ଖ୍ୟାତି ଦୁନିଆରେ
ପଣ୍ଡ ହେବ ସିନା ଯମ-ଦରବାରେ । ॥ ୩୨୦ ॥

ଗ୍ରାସେ ଅନ୍ନ ଦେଇ ଭୋକିଲକୁ କେବଳ;
ଶୋଷୀକି ମହାଏ ମାତ୍ର ଦେଇ ଜଳ
ତୋହପରେ ତହିଁ ବସିବେ ଗୌରବେ
ତୋର ମତେ କେତେ ନଗଣ୍ୟ ମାନବେ,

୩୦୮ । କାଳସିନ୍ଧୁ ସଇକତେ-କାଳରୂପକ ସମୁଦ୍ର କୂଳର ବାଲିରେ; ୩୧୦ । ଫେନଚୂଡ଼—ଫେନ ଚୂଡ଼ାରେ ଯାହାର; ୩୧୧ । ଆଟୋପ—ଆଡ଼ମ୍ବର; ୩୧୨। ଛତାକ ଛତୁ; ୩୧୬। କରକା-କୁଆପଥର. ୩୧୮ ! ଜ୍ୟୋତିରିଙ୍ଗଣ-ଜୁଳୁଜୁଳିଆ ପୋକ; ୩୨୦ । ପଣ୍ଡ—ବୃଥା, ବିଫଳ; ୩୨୪ । ନଗଣ୍ୟ—ଗଣନାର ଅଯୋଗ୍ୟ; ହେୟ । ୩୨୧-ଗ୍ରାସେ-ଗୁଣ୍ଡାଏ,

ବଡ ଝାଣ, ସୁଇ, ଚଉସୁ ପ୍ର-ହୁଆ
ବଡକ୍ଷଣ ତାର ପାଞ୍ଜିଆ-ପଣିଆ !
ଆଜ୍ଞ ଆଜ, ତହେଁ ଚଳୁଥାଉ ଯାହା,
ତା ପାଞ୍ଜିରେ ଲେଖା ହୋଇଯାଏ ତାହା,
ନରର ସମଗ୍ର ଜୀବନର ଚଣ
ପଲକେ ଦେଖାଏ ସେ ପାଞ୍ଜି ବଚଣ,

ଚନ୍ଦ୍ରାପୁରେ ଅଛୁ ଯେତେ ଗଳ କୁଞ୍ଚି,
ରହି ନ ପାରେ ତା ଆଲୋକରେ ଲୁଚି ।
କି ବହିର୍ଜଗତେ; କି ଅନ୍ତର୍ଜଗତେ
ଯେତେ ବେଳେ ଯାହା ଘଟେ ଏ ମରତେ
ସବୁ ଲେଖେ ସେହି ପାଞ୍ଜିକାର ରଢ଼
କଡ଼ା ଦାଢ଼ ତହୁଁ ଯାଏ ନାହିଁ ଛୁଡ଼ !
ବ୍ରହ୍ମାଣ୍ଡେ ତାପର ନାହିଁ ପାଞ୍ଜିକାର
ତା ହିସାବ ପୁଣି ଦୁନିଆ ବାହାର;
ଏ ପଦ ଗୌରବ ଏତେ ସାଜ ସଜ୍ଜା-
ପ୍ରତ୍ତ ତାର ତଳେ ନାହିଁ ଚକ୍ଷୁଲଜ୍ଜା !
ସେ ନମାନେ ତୋର ମୃଦୁହାସ ଛଟା,
ସେ ନଜାଣେ ଯାନ ଅନ୍ତରର ଘଣ୍ଟା !
ସେ ଗଣିବ ନାହିଁ ତୋର ସୁନାଘଡ଼
ଗଣିବ ନାହିଁ ତୋ ସାଲର ପଗଡ଼ି ।
କଢ଼ଦେବ ଯେବେ ସେହି ତୋତେ କାବୁ

୩୨୫ । ହୁଆ—ହୃଦସ୍ଥ : ୩୩୧ । ଗଳକୁଞ୍ଚି—ଗଳକନ୍ଦ; ୩୩୩ । ଅନ୍ତର୍ଗତ·—ମନୋରାଜ୍ୟ; ୩୩୫ । ରଢ଼—ନିର୍ଦ୍ଦୟ; କୃପଣ, ୩୪୨ । ଘଣ୍ଟା—ଆଡ଼ମ୍ବର ୩୪୫ । କାବୁ—ଶକ୍ତିହୀନ ।

ସେଠାରେ ନ ଥିବେ କେହି ଦେଶୀ ବାବୁ
ତୋହର ଆସନ ନେଙ୍କ ଦେବା ପାଇଁ,
ଶ୍ୱେତାଙ୍ଗ ଗ୍ରୁମୁରେ ମିଛ ସତ ଗାଇ;
ପ୍ରତାରଣା ବର୍ତ୍ତି ନ ପାରେ ତା ଆଗେ;
ବାହାର ଭିତର ଦେଖେ ସେହିକ୍ଷଣେ,

ବଡ଼ ତାର୍କିକ ସେ ଶୁଣି ତା ଯୁକତି
ବଣା ହେବେ ଜନେ କଣାଦ-ଭାରତୀ,
ମାନଦଣ୍ଡ ତାର ଅଭୁଲ କରିଆଣ
ମାପେ ଯାର ସାନ ବଡ଼ ବଡ଼ ସାନ;
ଭଲସୁନା ବୋଲି ଭବେ ଯେ ଝଲସେ

ଭେଲି ସିନା ଚନ୍ଦ ସୁପ୍ତର ନକଟେ ।
ତରାଜୁ ତାହାର ଦୁନିଆ-ବାହାର
ଗୁରୁ ଲଘୁ ଲଘୁ ଗୁରୁ ତୁଳେ ଯାର !
ଜେତା ଜିତେ ତାର ନାହିଁ ଭେଦ ଜ୍ଞାନ
କଳା ଧଳା ଚର୍ମ ତା ନେତ୍ରେ ସମାନ

ଭିଆଇ ନପାରେ ତା ଚକ୍ଷେ ଚମକ
ଏ ମହା ଭାସ୍କର ଅସ୍ଥିର ଝମକ
କରଇ ସେ କେତେ ରଙ୍ଗ କେତେ ମଜା

---

୩୫୮ । ଶ୍ୱେତାଙ୍ଗ—ସାହେବ; ସେତେବେଳେ ସାହେବମାନେ ଦେଶରେ ସର୍ବେସର୍ବା ଥିଲେ; ୩୫୯ । ପ୍ରତାରଣା-ଠକାମି ୩୬୧ । ତାର୍କିକ-ଯେ ତର୍କ ଜାଣେ, କଣାଦ-ଭାରତର ଜଣେ ପ୍ରାଚୀନ ଦାର୍ଶନିକ, ସେ ବୈଶେଷିକ ଦର୍ଶନର ପ୍ରଣେତା ୩୬୮ । ଗୁରୁ—ଓଜନିଆ ଲଘୁ ହାଲୁକା ୩୬୯ । ଜେତା ଯେ ଜୟ କରିଥାଏ ଜିତ—ଯାହାକୁ ଜୟ କରି ଯାଇଥାଏ । ୩୭୨ । ଭାସ୍କର—ତେଜସ୍ଥାନ

ବସାଇ ଦଅଇ ରାଜା ପରେ ପ୍ରଜା,
ବାଗୀଶ ଉପରେ ବସାଏ ବାଲିଶ,
ସବାର ଉପରେ ବସାଏ ସଇସ,
ଦୁର୍ବଳକୁ ଦଏ ବଳୀପରେ ସ୍ଥାନ,
ସୁସ୍ଥଠାରୁ ଦଏ ରୋଗୀକି ସମ୍ମାନ,
ସୁନ୍ଦର ଉପରେ ବସାଏ କୁତ୍ସିତ,
ବସାଇ ଦଏ ସେ ଜେତା ପରେ ଜିତ,
ଯେତେକ ହୋଇ ଯାଇଥିଲେ ଯଷିମାଜି.
ଭାଙ୍ଗିଯାଏ ଦର୍ପ ଚଷ ଖୁଦ୍ର-ପାଞ୍ଜି !
ସେ ନମାନେ, ଖାଇ ଫେସନ ଚେହେରା,
ବାବୁ ପରେ ଦଏ ବସାଇ ବେହେରା ।
ସିଂହ ପରେ ଦଏ ବସାଇ ଶଶାକୁ,
କରଣ ଉପରେ ବସାଏ ଚଷାକୁ,
ଜଜ ପରେ ଦଏ ବସାଇ ଆସାମୀ,
ରଇତ ବସାଇ, ବସାଏ ଭୂସ୍ୱାମୀ,
ବସାଏ ଚଣ୍ଡାଳ ତଳେ ଶ୍ରେଷ୍ଠ ବର୍ଣ୍ଣ,
ଅଧମର୍ଣ୍ଣ ତଳେ ତାର ଉତ୍ତମର୍ଣ୍ଣ,
ମାଗିବ ଯେବେ ସେ ମନ୍ତ୍ରୀର ହିସାବ,
କି ହିସାବ ଦେବ, ଦେଲୁଁ ତାହା ଖାବ,
ଭଣ୍ଡିବାର ତାକୁ ନୁହଇ ସହଜ,
ନଖାର ନଖାର ଦେଖେ ସେ କାଗଜ,

---

୩୬୫। ବାଗୀଶ—ପଣ୍ଡିତ, ବକ୍ତା; ବାଲିଶ-ମୂର୍ଖ, ସବାର-ଅଶ୍ୱାରୋହୀ ୩୬୭ । ବଳୀ—ବଳବାନ ୩୭୫ । ଶଶା—ଠେକୁଆ, ୩୭୮ । ଭୂସ୍ୱାମୀ—ଜମିଦାର. ରଇତ—କୃଷୀ. ୩୮୦ । ଅଧମର୍ଣ୍ଣ—ଖାତକ. ଉତ୍ତମର୍ଣ୍ଣ—ମହାଜନ ।

*

ଦେଇଅଛ କେତେ କୋଠି ଭଡ଼ା ଗ୍ରୁଡ଼,
ଦେଇଅଛ କେତେ ଥର ଘୋଡ଼ା ଗାଡ଼ି,
କେତେ ଥର ଯାଇ ବନ୍ଧୁଙ୍କ ନିଳୟେ,
କିଣିଅଛ ଦ୍ରବ୍ୟ ଚତୁର୍ଗୁଣ ଦାମେ,
ବାଣ ପ୍ରଦର୍ଶନ, ତୋରଣ ଗଠନ,
ସ୍ୱର୍ଣ୍ଣାକ୍ଷରେ ଅଭିନନ୍ଦନ-ମୁଦ୍ରଣ-
ଆଦି ଶୁଭକାର୍ଯ୍ୟେ ନେତୃପଣ ନେଇ
ଅକାତରେ କେତେ ମୁଦ୍ରା ଅଛ ଦେଇ,
ଦେଇଅଛ ଖ୍ୱେଳେ କେତେ ମାଂସ ସୁରା,
ତା ପାଇଁ କଡ଼ାଏ ନୋହିବ ମଜୁରା !
ସେଦରବାରର ସ୍ୱାଦ ମିଠା ଖିବ

ଧର୍ମେ ବଳବାନ କର ନିଜ ଦାବୀ;
ଚତୁର ପଣର ଥିଲେ ଅଭିମାନ;
ମର୍ତ୍ତ୍ୟ-ଅଭିମାନ ଦିଅ ବଳିଦାନ;
ଶୋଭଇକି,ଖିଇ, ତୁମ୍ଭର ବଣ୍ଣରେ
ଆଶ୍ରିତ ହୋଇ ଏ ମମତା ନଶ୍ୱରେ ?

ହେବାର ହେଉଛୁ ଯେ ସମ୍ମାନ-ପାତ୍ର,
ସ୍ୱର୍ଣ୍ଣ ନୁହଇ ତା, ସ୍ୱର୍ଣ୍ଣାଭାସ ମାତ୍ର;
ସ୍ପର୍ଶମଣି ଯାର ପାଇବାର ଆଶ;
ଭେଳ ପାଇଁ କିପାଁ ତାର ଏ ପ୍ରୟାସ ?

---

୩୮୯। ତୋରଣ ଫାଟକ; ୩୯୦। ସ୍ୱର୍ଣ୍ଣାକ୍ଷରେ—ସୁନେଲି କାଳିରେ ଛପା ଅକ୍ଷର; ୩୯୩। ସୁରା ମଦ; ୪୦୦। ଶାମ୍ବୃତ—ଚରନ୍ତନ, ୪୦୩। ସ୍ପର୍ଶମଣି—ଯେଉଁ ମଣିକୁ ଛୁଇଁଲେ ଲୁହାପ୍ରଭୃତ ସୁନା ହୋଇଯାନ୍ତି। ୪୦୪—ପ୍ରୟାସ—ଚେଷ୍ଟା,

ବନସ୍ତେ କହୁଛୁ ଯେନ ମୋର ବୋଲ,
କଦା ମଣି ତୁମ୍ଭେ କମ୍ପା କଅ ପୋଲ ?
ଶିଶୁ ମନୋହର ବାହାରର ଝଲ
ଦେଖି କର କପା । ଶିଶୁ ପ୍ରାୟେ ଅଳ ?
କେତେବଡ଼ ତୁମ୍ଭେ; କେତେ କ୍ଷୁଦ୍ର ପୃଥ୍ୱୀ,
ଜାଣି ହୁଅ ଏହ୍ୱ କନ୍ଧାରେ ତୂନ ।
ଅସାର ବେପାରେ ନିରତେ ନିର୍ଲେପ
ରହ୍ୱ ସାର-ତତ୍ତ୍ୱେ କର କାଳ କ୍ଷେପ,
ନ ସଢ଼ ବଡ଼ିମା ତାମସ-ଗହ୍ୱରେ
ନିଦମ ଉଠ ଧର୍ମ-ଶଇଳ-ଶିଖରେ,
ଗୃହିଲେ ଯେସନ ଶଇଳ-ଶିଖରୁ

ସମ ଦିଶେ ମହୀସ୍ଥିତ ତୃଣ ତରୁ,
ଧର୍ମନେତେ ସାନବଡ଼ ଦୁନିଆର
ଦୂରୁଁ ସବୁ ଯିନା ଦିଶେ ଏକାକାର
ଧର୍ମ-ଶୈଳେ ବସି ନିରତେ ନିଃସଙ୍ଗ
ହୋଇ ଦେଖ ଦୁନିଆର ନାଟରଙ୍ଗ,
ଦୁନିଆର କଳଗୋଳରେ ତୋଫାନ-
ଊର୍ଦ୍ଧ୍ୱେ ରହି କର ଶାନ୍ତି-ସୁଧା ପାନ ।
ମଣିନାହିଁ ମୁହିଁ ନେଇଛୁ ଏସନ
ଜ୍ଞାନଦର୍ପେ ଜ୍ଞାନ-ଦାତାର ଆସନ:
ଥୋଇ ଏ ମୁକୁର ତୁମ୍ଭ ଆଗ; ଖଇ,.

---

୪୧୧। ନିର୍ଲେପ—ନିର୍ଲିପ୍ତ ୪୧୩ । ବଡ଼ିମା ତାମସ ଗହ୍ୱର—ଅଭିମାନ ରୂପକ ଅନ୍ଧାରର ଗାଢ଼ ୪୧୯ । ନିଃସଙ୍ଗ—ନିର୍ଲିପ୍ତ ଉଦାସୀନ ୪୨୦। ନାଟରଙ୍ଗ —ଲୀଳାଖେଳା ୪୨୩। ସୁଧା—ଅମୃତ ୪୨୫। ମୁକୁର—ଦର୍ପଣ ।

ନିଜ ମୁଖ ମୁଁ କି ନିଜେ ଦେଖୁନାହିଁ ?
ପାଶୋର ନାହିଁ ମୁଁ ହେଉଅଛୁ ବ୍ୟସ୍ତେ
ଏକା ଅନ୍ଧ କୂପେ ଦରଣ୍ଡି ସମସ୍ତେ,
ପାଶୋର ନାହିଁ ମୁଁ ସ୍ୱପ୍ନେ କଦାଚିତେ,
ସର୍ବେ ଅଛୁ ଏକ ଦଦରୁ ବୋଇତେ,

ଆଗେ ପଛେ ତୋଳି ଖର ଉର୍ମିମାନ
ଭବ-ଜଳଧିରେ ଗର୍ଜଇ ତୋଫାନ,
ଯେଣେ ମନ ତେଣେ ଗୁଲୁଅଛୁ ନାହା,
ନାହିଁ କଡ଼ୁଆଲ ଦେଖାଇବ ରାହା,
କାହୁଁ ଅଇଲୁ ଏ, କାହିଁଠିବ ବାହୁ,

କହିବାକୁ ଏହା ନାବେ କେହି ନାହିଁ ।
କେହି ନାହିଁ ଏଥି ହେବ ଯେ ଖିଜନ
ଫେଡ଼ିବାକୁ ଏ ସମସ୍ୟା ସନାତନ,
ଜାଣେ ମୁହିଁ ଏହି ସାଂଯାତ୍ରିକ ଦଳେ
ହୀନଠାରୁ ହୀନ ମୁହିଁ ଜ୍ଞାନ ବଳେ,

ଅଜ୍ଞାନ ଅଟେ ମୁଁ ଏ ଜ୍ଞାନୁ ବଞ୍ଚିତ
ଖିଳନାହିଁ, ଖଇ, ମୋତେ କଦାଚିତ,
ପ୍ରଭେଦ ମଧ୍ୟରେ ଏତକ କେବଳ-
ଯହିଁ ତୋଫାନର ସବୁଠାରୁ ବଳ
ଘୁଣ-ବୃକ୍ଷ-ଚୂଳେ, କେଜାଣି କିପାଇଁ

---

୪୨୮ ଦରଣ୍ଡି—ଅଣ୍ଡାଳି ହେବା ୪୩୧ । ଉର୍ମି—ଲହରୀ, ୪୩୪। କଡ଼ୁଆଲ—ମଙ୍ଗଧରା, ରାହା —ବାଟ ୪୩୭। ଖିଜନ-ସମର୍ଥ, ୪୩୮। ସମସ୍ୟା-କଠିନ ପ୍ରଶ୍ନ, ସନାତନ—ଚିରନ୍ତନ; ୪୩୯। ସାଂଯାତ୍ରିକ - ସାଗରଯାତ୍ରୀ; ୪୪୫ । ଘୁଣବୃକ୍ଷ—ମାସ୍ତୁଲ ।

ଭାଗ୍ୟ ଭାଇ, ମୋତେ ଦେଇଛୁ ବସାଇ;
ହେଉଅଛୁ ନାହା କେତେ ଟଳମଳ,
ତୋଫାନ କପଟ ହେଉଛୁ ପ୍ରବଳ,
ସବୁଠାରୁ ମୁହିଁ କଳୁଛୁ ଅଧିକ,
ସବୁଠାରୁ ଯେଣୁ ହଲୁଛୁ ଅଧିକ.

ତେଣୁ ଆଜ୍ଞେ ସିନା ପକାଉଛୁ ହୁର,
ନୋହେ ଏହା ଜନଗୁମାନ-ଗୁରୁଣୀ;
ସମଦୁଃଖୀଠାରେ ଦୁଃଖି-ଆର୍ତ୍ତିନାଦ ।
ସିନା ଏହା ନୁହେଁ, ଅଜ୍ଞେ ପ୍ରଜ୍ଞାବାଦ ।
ଅହେ ମାନ ଶୌଣ୍ଡ ଭୂପାଳ-ମଣ୍ଡଳ

ଦେଇଛନ୍ତି କୁଳଧର୍ମେ ଜଳାଞ୍ଜଳି ?
ବୃଥା କମ୍ପା ହେଉଅଛ ସ୍ଥାନମାନ ?
ସିଂହାସନ କର ସ୍ୱର୍ଗର ସୋପାନ,
ଜନ୍ମଫଳେ ଲଭିଅଛ ଅପ୍ରମିତ-
ଶକ୍ତି ସାଧିବାକୁ ସଂସାରର ହିତ,

ଜନ୍ମଫଳେ ଲଭି ସଂପଦ ଅମାପ
ଭୋଗି ନାହିଁ କେବେ ଅଭାବର ତାପ,
ଜନ୍ମ ଅନୁରୂପେ ବ୍ୟକ୍ତିଗତ ଦାୟୀ
ହେବ ଏହାଦନେ ମନ କଲ ନାହିଁ !
ଏ ଯୋଗ ଜଗତେ ପାନ୍ତି କେତେ ଜଣ ?

---

୪୫୧ । ହୁର—ଡାକ; ୪୫୪ । ଅଜ୍ଞେ ପ୍ରଜ୍ଞାବାଦ—ମୂର୍ଖମାନଙ୍କ ଭିତରେ ପାଣ୍ଡିତ୍ୟର ପ୍ରକାଶ, ୪୫୫ । ମାନଶୌଣ୍ଡ—ଅଭିମାନରେ ମତ୍ତ; ଭୂପାଳ-ମଣ୍ଡଳୀ—ରାଜାମାନେ; ୪୫୯ । ଅପ୍ରମିତ—ଯଥେଷ୍ଟ ।

ଏହାପାଇଁ ତୁମ୍ଭେ ହେଲ ଅକ୍ଷମଜନ !
ଭୃଙ୍ଗଣ ରହିଲ ଆମୋଦେ ଆବାଳି
ବିଦ୍ୟାକୁ ମଣିଲ ଶିବ-ନିରମାଲି
ରକ୍ଷଣ, ପାଳନ, ଭୋଗ ଏ ଧରାର;
ତନକାର୍ଯ୍ୟେ କଲ୍ ତୃତୀୟକୁ ସାର,
ପର ସେବା ଲାଗି ତୁମ୍ଭର ଜନମ,
ଆତ୍ମ ସେବା କଲ କୌଳିକ ଧରମ,
କାଷ୍ଠ-କଣ୍ଠୀରବ ମାତ୍ର ଜଣେ ଜଣେ,
ପ୍ରଧାନ ମନୁଷ୍ୟେ ଅମନୁଷ୍ୟ ପଣେ !
ଐଶ୍ୱର୍ଯ୍ୟ-ତମିରେ ଦୃଷ୍ଟି ପ୍ରତିହତ,
ଧନ ଦର୍ପ-ଶୋଥେ ରୁଦ୍ଧ କର୍ଣ୍ଣପଥ,
ଆଶ୍ରୟନ୍ତ ତୁମ୍ଭ ନେହେ ବାଗୀଶ୍ୱରୀ
ଦିବା ଦିବାନ୍ଧର ନୟନେ ଯେପରି;
ପଣ୍ଡିତଙ୍କ ମଣ କେବଳ କଣ୍ଟକ,
ଆସ୍ଥାନ-ନନ୍ଦନ-ଧୂର୍ତ୍ତି ବଞ୍ଚକ,

୪୬୬। ଅକ୍ଷମଜନ—ଅସମର୍ଥ, ୪୬୭। ଆବାଳି—ପିଲାଦିନରୁ; ୪୬୮। ଶିବ—ନିର୍ମାଲି—ଶିବଙ୍କ ନିର୍ମାଲି ଶୈବଙ୍କ ଛଡ଼ା ଅନ୍ୟମାନଙ୍କର ଅଗ୍ରାହ୍ୟ; ତେଣୁ ଏଠାରେ ଅର୍ଥ ହେଉଛି— ବିଦ୍ୟାଠାରୁ ଦୂରରେ ଅଛ । ୪୭୦। ରାଜାର କର୍ତ୍ତବ୍ୟ ହେଉଛି ରାଜ୍ୟର ରକ୍ଷା; ପାଳନ ଓ ଭୋଗ; କିନ୍ତୁ ରାଜାମାନେ କେବଳ ଭୋଗରେ ଆସକ୍ତ ହୋଇଅଛନ୍ତି, ୪୭୩ । କାଷ୍ଠକଣ୍ଠୀରବ—କାଠରେ ତିଆରି ସିଂହ; ୪୭୫ । ଦର୍ପ-ଅହଙ୍କାର, ୪୭୭ । ବାଗୀଶ୍ୱରୀ—ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ । ୪୭୮ ଦିବାନ୍ଧ—ଦିନକଣା, ୪୮୦ । ଆସ୍ଥାନ-ନନ୍ଦନ-ଧୂର୍ତ୍ତି—ରାଜସଭାରେ ପଣ୍ଡିତମାନେ ଆସନ ଗ୍ରହଣ କରିବା ପରିବର୍ତ୍ତେ ତୋଷାମଦୀ, ମୂର୍ଖ ଏବଂ ପ୍ରବଞ୍ଚକମାନେହିଁ ସମ୍ମାନ ଲାଭକରି ଥାଆନ୍ତି ।

ପ୍ରତିଧ୍ୱନି ପରି ସଦା ସ୍ତବକାରୀ,
ତୁମ୍ଭ ପ୍ରିୟ ପାର୍ଶ୍ୱ ଗଢ଼ଇ ଭଣ୍ଡାର !
ପ୍ରଭୁ ବୋଲାଇଣ ତୁମ୍ଭେ ଅନୁକ୍ଷଣ
ହେଲ ଦେହଲଗା ଭୃତ୍ୟର ବାହନ ।
ବାଇ ଶୁଣିବାକୁ ଖଳର କଳ୍ପନା,

ଭଲ କଥା ଲାଗେ କାନକୁ ଅଲଣା ।
ସତ୍ୟ ହୃଦେ ବାଜେ ଯେସନ୍ତେ ଶତ ସୂଚୀ;
ସ୍ୱାର୍ଥାନ୍ୱେଷି-ମିଥ୍ୟାବାଦେ ସଦା ରୁଚି !
ସତ୍ୟ ଲେଶେ ସ୍ଥାନ ନ ଲଭେ ମାନସେ,
ସଦା ଅଭିରୁଚି ରାଜସେ,ତାମସେ,

ସଙ୍ଗୀତ ମୃଗୟା ପକ୍ଷୀ ନଶା ପଶା-
ଖେଳ କଲ ତୁମ୍ଭେ ଜୀବନ ବ୍ୟବସା !
କିଏ ତୁମ୍ଭେ ମର୍ତ୍ତ୍ୟେ ଆସିଲ କାହିଁକି ?
ଜାହିଁସିବ ଥରେ ଭାଳିବ ନାହିଁକି !
ମୁକୁଟ ଘୋଡ଼ାଇ ରଖିଲ ପଳିତ

ଦେଖିଲ ସ୍ୱର୍ଣ୍ଣେକ ଦୃଷ୍ଟି ଛତ୍ରସିତ
ନଜକୁ ନଜର ବଡ଼ମାର ଗଜେ
ମାପି ବଡ ତୁମ୍ଭେ ହେଉଛ ସହଜେ,

---

୪୮୫ । ବାଇ—ପାଗଳ, କଳ୍ପନା—କଥା; ୪୮୬ । ଅଲଣା—ଅପ୍ରିୟ; ୪୮୭ । ସୂଚୀ—ଛୁଞ୍ଚୀ; ୪୮୮ ।ସ୍ୱାର୍ଥାନ୍ୱେଷୀ—ସ୍ୱାର୍ଥପର, । ୪୯୦ । ରାଜସ—ରଜୋଗୁଣର କର୍ମ; ତାମସ—ତମୋଗୁଣର କର୍ମ; ଖଳସ୍ୱଭାବ, ୪୯୧ । ମୃଗୟା—ଶିକାର, ୪୯୫ । ପଳିତ—ଶୁକ୍ଲ (କେଶ); ୪୯୬ । ଛତ୍ର—ଛତା: ସିତ—ଧଳା; ୪୯୭ । ଗଜ—ମାପକାଠି ।

ଆସନର ବଡ଼ ପଣ ନିଜଠାରେ
ଆରୋପି ମାତିଛ ସିନା ଅହଙ୍କାରେ !
ପ୍ରାଂଶୁ ନରସ୍କନ୍ଧେ ବସି ଶିଶୁଜନେ
ନିଜକୁ ଗଣନ୍ତି ସର୍ବୋଚ୍ଚ ଯେସନେ;
ନିଜସ୍ୱ ତୁମ୍ଭର କିଅଛି ତହିଁରେ,
ଯା ଘେନି ବୋଲଅ ବଡ଼ ଏ ମର୍ତ୍ତ୍ୟରେ ?
କାଠିଲଗି, ମାତି, ମୁଣୋହ୍ୱ, ପହଡ଼
ଘେନି କହେ ତୁମ୍ଭେ ନର ମଧ୍ୟେ ବଡ଼ ।
ବଡ଼ ପଣ ଯେଣୁ ସଦା ପରବଶ,
ଜଡ଼ପରି ପର ହାତେ ଉଠ ବସ !
କ୍ରୀଡ଼ା ମୃଗ ତୁମ୍ଭେ ହେଲ ନିରନ୍ତର
ଛଧ୍ୱଭକ୍ଷା ପ୍ରିୟ ବୈଧେୟ ବୃନ୍ଦର ।
ମାତି ସାରୁ ସାରୁ ଦିନ ଅଣ୍ଟୁ ନାହିଁ,
ଧର୍ମ ଅର୍ଜିବାକୁ ଅବସର କାହିଁ ?
ଗ୍ରାମ୍ୟାମୋଦ-ପଙ୍କେ ଶୂକର ପରାୟେ
ଘାଣ୍ଟି ହେଉଥିବ କେତେଦିନ ଯାଏ ?
ଆମ୍ନୋନ୍ନତି-କଳେ ଏ ସୁବଧା ନେଇ
ହୋଇଥିବ କହେ ପଶୁଧର୍ମ ଦେହୀ ?
ମନେ ନାହିଁ କାହୁଁ ପଡ଼ିଅଛୁ ଖସି,
କି ଆସନ ଛୁଡ଼ି କାହିଁରେ ଲାଳସୀ,

---

୫୦୧ । ପ୍ରାଂଶୁ-ଉନ୍ନତ, ଡେଙ୍ଗା; ୫୦୫ । କାଠିଲଗି—ରାଜାଙ୍କ ଦାନ୍ତ-ଘଷା, ମୁଣୋହ୍ୱ—ରାଜାଙ୍କ ଭୋଜନ, ପହଡ଼—ରାଜାଙ୍କ ଶୟନ ; ୫୦୮ । ଜଡ଼—ନିର୍ଜୀବ, ୫୦୯ । କ୍ରୀଡ଼ାମୃଗ—ଖେଳନାପରି ବ୍ୟବହୃତ ହେବା, ୫୧୦। ବୈଧେୟବୃନ୍ଦ—ମୂର୍ଖ ମାନେ, । କିଛି ହୃଦୟଙ୍ଗମନକରି ସିଏ କେବଳ ବିଧି ପାଳନ କରନ୍ତି, ୫୧୩ । ଶୂକର—ଘୁଷୁରି, ଗ୍ରାମ୍ୟାମୋଦ—ନୀଚସୁଖ ।

ପରିଚ୍ଛଦ ରୂପେ ସେନା ନେଇ ସଙ୍ଗେ,
ଅଙ୍ଗ ଢାଙ୍କୁଥିଲେ ଯେ ରଣ-ତରଙ୍ଗେ,
ତାଙ୍କର ଦାୟାଦ ହୋଇ କ' ହେବାରେ,
ଝୁଲୁଥିବ କାନ୍ତା-ପଣତ-କାନରେ ?
ପାଦର ଉଚ୍ଚାଳେ ରହୁଥିବ ଡର
ବିଦେଶୀ-ସମ୍ମୁଖେ କାଦଶିକ ପର !
ମନେ ନାହିଁ ତୁମ୍ଭେ କାହାର ସନ୍ତାନ,
କେଶରୀ-ଔରସେ ତୁମ୍ଭେ ଜିନ୍ମା ଶ୍ୱାନ ।
ପୂର୍ବ ପୁରୁଷର ପ୍ରତିଷ୍ଠା ବିଶାଳ
ବିକ ଭାଙ୍ଗି ଖାଉଥିବ କେତେକାଳ ?
ସେ ପ୍ରତିଷ୍ଠା କଲେ ତିଳେ ନ ବଢାଇ
କରୁଥିବ ଆଉ କେତେ ତା ବଡ଼ାଇ ?
ଥିଲେ ଆଗେ ଯେହୁ ଉତ୍କଳର ସ୍ୱାମୀ,
ବହ୍ନିଶିଖାପରି ସଦା ଊର୍ଦ୍ଧ୍ୱଗାମୀ,
ତୁମ୍ଭେ ହୋଇ ସେହୁ ବଂଶର ସନ୍ତତି,
ଜଳଧାରା ପରି ହେଲ ଅଧୋଗତି ।
ତୁମ୍ଭ ପିତୃଗଣ ପରମ ଉଦାର,
ରାଜ୍ୟ ମଣୁଥିଲେ ଏକ ପରିବାର ।
କାହିଁ ଗଲା ସେହୁ ପ୍ରାଚୀନ ସୁଧାର !

୫୧୯ । ପରିଚ୍ଛଦ—ପୋଷାକ, ୫୨୧ । ଦାୟାଦ—ଉତ୍ତରାଧିକାରୀ, ୫୨୨ । କାନ୍ତା—ପତ୍ନୀ, ୫୨୪ । କାଦଶିକ—ଯେ କେଉଁ ଦାଗକୁ ଯିବ ସ୍ଥିର କରି ନ ପାରେ; ୫୨୬ । କେଶରୀ—ସିଂହ; ଶ୍ୱାନ—କୁକୁର, ୫୩୦ । ବଡ଼ାଇ —ଟେକ, ୫୩୨ । ବହ୍ନି— ଅଗ୍ନି, ୫୩୩ । ସନ୍ତତି—ସନ୍ତାନ; ୫୩୬। ସୁଧାର---ଉତ୍ତମରୀତି ।

*

ରାଜା ପ୍ରଜା ଏବେ ହେଲେ ବାଜ ପାରା !
କାଢ଼ିନେଲ ରାଜଭୋଗ-ଅଭିଳାଷ
ପ୍ରଜାମୁଖୁ ତାଙ୍କ ଶ୍ରମାର୍ଜିତ ଗ୍ରାସ !
ଦେଶୀ ହୋଇ ତୁମ୍ଭେ ଆଚରିଲ ନିତ
ନିର୍ମମ ବିଦେଶୀ-ସର୍ବଶୋଷି-ରୀତ !
ବାସ୍ତଲ୍ୟ ନବାନ୍ଧ ପ୍ରଜାଙ୍କର ଚିତ୍ତ,
ବିଦେଶୀ-ସଙ୍ଗୀନେ କଲ ତାଙ୍କୁ ଖିତ,
ଗନ୍ଧାଘର ହେଲା ତୁମ୍ଭର ସର୍ବସ୍ୱ,
ସର୍ବସ୍ୱ ପ୍ରାସାଦ, ଗାଈ ହସ୍ତୀ ଅଶ୍ୱ,
ରାଜଧର୍ମ ହେଲା ପ୍ରଜା ଧନ ଲୁହା,
ମନ୍ତ୍ରୀ ହେଲେ ଖଳ, ଖଣ୍ଡ; କାନକୁହା.
ତନ୍ତ୍ରି ଦୁଃଖୀ, ରଙ୍କ, ଅରକ୍ଷିତ, ରଣ୍ଡ,
ବିଦେଶୀଙ୍କି ଖିଆଇଲ କୁକୁକ୍ଟାଣ୍ଡ,
ନ ପାଇଲେ ଦୁଃଖୀ ପ୍ରଜା ଖୁଦକୁଣ୍ଡା.
ନେଲେ ଘିଅ ଅଣ୍ଡା ସଙ୍ଗେ ଗୁଗମୁଣ୍ଡା,
କାଣ୍ଡଜ୍ଞାନ-ହୀନ କାଣ୍ଡ ପୃଷ୍ଠ ହୁଣ୍ଡା,
ଅଭୀଷ୍ଟ ଦେବତା କଲ ଲୋଭ ପ୍ରେତ,
ନ ଚେତିଲ ଖାଇ ବିପଦର ବେତ,
ସଦା ହୋଇ ପାପ-ଦ୍ରବିଣ-ପ୍ରତ୍ୟାଶୀ
ପ୍ରଜାମଧ୍ୟେ ପାପ ବୃଦ୍ଧିକି ମନାସି

୫୩୮ । ବାଜପାରା—ପରସ୍ପରର ଶତ୍ରୁ, ବାଜ ପାରାକୁ ମାରି ଖାଏ; ୫୪୨ । ବିଦେଶୀ-ଅର୍ଥାତ୍ ଇଂରେଜ ଜାତି; ୫୪୪ । ସଙ୍ଗୀନ-ବନ୍ଧୁକର ଅଗରେ ଲାଗିଥିବା ମୁନିଆଁ ଅସ୍ତ୍ର; ୫୪୮—କାନକୁହା— ତୋଷାମଦିଆ,-ରଙ୍କ-ଭିକ୍ଷୁକ ୫୫୦ । କୁକୁକ୍ଟାଣ୍ଡ-କୁକ୍କୁଟୀରଣ୍ଡମ୍, ୫୫୩ । କାଣ୍ଡଜ୍ଞାନହୀନ-ବିଚାର ଶକ୍ତି ରହିତ, ୫୫୬ । ଦ୍ରବିଣ-ଧନ । ୫୫୩—କାଣ୍ଡପୃଷ୍ଠ—ଶସ୍ତ୍ରବ୍ୟବସାୟୀ, ୫୫୭ । ମନାସି—ଇଚ୍ଛାକରି ।

ରହିଥାଅ ଟାଙ୍କ, କର ଜଣମାନା,
ଧନେ ପୂରାଇବା ଲାଗି ମାଲଖାନା,
ଧନର ଲାଲସା ଜାଗତେ ସ୍ୱପନେ,
ଧନ ବିନୁ ନାହିଁ ଆନ ଚିନ୍ତା ମନେ,
ଧନର ସାଫଲ୍ୟ ସୁବ୍ୟୟ କେବଳ,
ଯକ୍ଷ ପ୍ରାୟେ ତାକୁ ଜଗି କେଉଁଫଳ ?
ମଞ୍ଚେ କେତେ ଆସି କେତେ ଗଲେ ଖସି;
କିଏ ନେଇ ଗଲେ କି ଧନ, ମୁଣ୍ଡାଇ ?
ପଡ଼ିତ ରହିଲେ ପଛେ ହାତୀ ଘୋଡ଼ା,
ପଡ଼ିତ ରହିଲା ସୁନା ରୂପା ତୋଡ଼ା,
ପଡ଼ିତ ରହିଲା ରତନେ ଖସର,
କୁବେର ଭଣ୍ଡାର ସମ ଗନ୍ତାଘର,
"ଜିଣିବାକୁ ଆଉ ନାହିଁ ଧରାଖଣ୍ଡ"
ବୋଲି କଲେ ଯେହୁ ଅଶ୍ରୁସିକ୍ତ ଗଣ୍ଡ,
ମଲାବେଳେ ବିଶ୍ୱ-ବିଜୟୀ ସ୍କନ୍ଦର
କି କହିଥିଲେ ତା ଚିତ୍ତେ ଥରେ ଧର,
ବୋଇଲେ; "ଏପ୍ରାଣ ଗଲେ ପିଣ୍ଡ ଗୁଣ୍ଡ,
ନେବ ଯେବେ ମୋତେ କୋକେଇରେ କାଢ଼ି
ଦେଇଥିବ ତହିଁ ମୋ ଶବ ଶୁଆଇ,
ବେନ ପାଶେ ବେନ କରକୁ ଝୁଲାଇ,
ଯା ଦେଖି ଜାଣିବେ ଜଗତେ ସମସ୍ତେ,
ଆସିଥିଲି ଫେରିଗଲି ଶୂନ୍ୟହସ୍ତେ !"

---

୫୬୭ । ତୋଡ଼ା—ଥଳି, ୫୬୯ । କୁବେର—ବିଶ୍ରବାଋଷିଙ୍କପୁତ୍ର, ଅଳକା ପୁରୀରେ ସେ ରାଜପଣ କରନ୍ତି । ସେ ହେଉଛନ୍ତି ଧନାଧିପତି ୫୭୧ । ସ୍କନ୍ଦର—ଆଲେକଜାଣ୍ଡର ।

ଏହି ମହାବାକ୍ୟ ମନେ ମନେ ହେଜ
ସତ୍ତ୍ୱଗୁଣ ଭଜ ଲୋଭ ମଦ ତେଜ ।
ଅକାରଣେ କମ୍ପା ଚଣ୍ଡି ଅରକ୍ଷିତ
ଅଲବ୍ଧଧନ ପାଇଁ ହସ୍ତ ଅଛୁ ବଢ଼ି ?
ବୋଲଅ ଜଗତେ ସିନା ଲକ୍ଷ-ପୋଷୀ;
ଫଳେ ତୁମ୍ଭେ ଜଣେ ଜଣେ ଲକ୍ଷ-ଶୋଷୀ

ଗଣିକା, ଓକିଲ, ଗୁମୁଆ ପୋଷଣ
ଲାଗି କର କମ୍ପା ପ୍ରଜାଙ୍କୁ ଶୋଷଣ
ପ୍ରଜାରକ୍ତ, ସ୍ୱେଦ, ଲୋତକେ ଅର୍ଜିତ
ଅଭିଶପ୍ତ ରାଶି ରାଶି ପାପବିତ୍ତ
ପ୍ରାୟଶ୍ଚିତ୍ତେ ବ୍ୟୟ ନକର ଯତନେ,

ପାପ ଅର୍ଜୁ ଅଛୁ ପାପାର୍ଜିତ ଧନେ !
ଅର୍ଜୁ ଅଛୁ ସିନା କେବଳ ଦୁଷ୍କୃତ
ଘୃଷ୍ଟି ମୁଖେ ଢାଳି ଯଜ୍ଞକୁଣ୍ଡ-ଘୃତ !
ଏ ଅପ୍ରିୟ-ସତ୍ୟ ଛଳକୁ ନ ଧର
ନଜ ଶ୍ରେୟ ଦେଖ ଚକ୍ରେ ଚନ୍ଦ୍ରାକର,

ଭଗ୍ନ ଘଟୁଁ ଆହା, ସଲିଳ ଯେସନ
ସରଯାଉ ଅଛି ଆୟୁ ପ୍ରତିକ୍ଷଣ.
ବଡ଼ କ୍ରୂର କାଳ, ବଡ଼ ଅବିଶ୍ୱାସୀ ।

---

୫୮୧ । ମଦ—ଗର୍ବ; ୫୮୩ । ବିତ୍ତ-ଧନ, ୫୮୫ । ଲକ୍ଷଶୋଷୀ-ଲକ୍ଷଲୋକଙ୍କ ଶୋଷକ ୫୮୬ । ଗଣିକା—ବେଶ୍ୟା; ଗୁମୁଆଁ—ରାଜାଙ୍କ ପାଖଲୋକ। ୫୮୭ । ସ୍ୱେଦ—ଝାଳ; ଲୋତକ—ଲୁହ; ୫୯୨ । ଦୁଷ୍କୃତ—ପାପ; ୫୯୩ । ଘୃଷ୍ଟି—ଘୁଷୁରି; ୫୯୫ । ଶ୍ରେୟ—ମଙ୍ଗଳ; ୫୯୬ । ଭଗ୍ନ ଘଟ—ଭଙ୍ଗା ମାଠିଆ; ୫୯୮ କ୍ରୂର—ନିର୍ଦ୍ଦୟ ।

ହାଁବୋଢ଼ ପିବ ସେ ଆଚମ୍ବିତେ ଆସି;
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେତ ପଛେ ଆସି ଲୁଚି ବସେ,
ଶୀତ ବେଳ ବୁଝି ଗ୍ରୀଷ୍ମରେ ହାଜର
ହେବା ବିଧି ତାଙ୍କୁ ନାହିଁଟି ଗୋଚର !
କେତେ ଦିନ ଖେଳୁ ଥିବ ଏହି ଖେଳ ?
ପାଖେଇ ଆସୁଛି ସେ ଅନ୍ତିମ ବେଳ

ଆସୁଛି ନୀରବେ ସେହି ପ୍ରତିକ୍ଷଣେ
ନିତ୍ୟାଗାମି-ରଥ-ଚକ୍ର-ଆବର୍ତ୍ତନେ,
ଆୟୁ-ସୂର୍ଯ୍ୟ ଯାଏ ଚଳେ ଯେତେ ଗଡ଼ି,
ତୁମ୍ଭ ମାୟା ଯାଏ ଗ୍ରୀଷ୍ମାପରି ବଢ଼ି,
ମାୟା-ଡେର ଚଳେ ଭେଦିବ ଯେତିକି,

ଅନ୍ତକ ରଗଡ଼େ ଝିଙ୍କିବ ତେତିକି,
ସେ କଠିନ ଝିଙ୍କା ଝିଙ୍କିରୁ ନିସ୍ତାର
ଲଭିଲାଗି ଆଗୁଁ ହୁଅ ହୁସିଆର;
ବେଳ ଥାଉଁ ଥାଉଁ ଅରଜି ଧରମ
ଜନ୍ମ—ଅନୁରୂପେ ଦେଖାଅ କରମ;
ଜନ୍ମ ଫଳେ ଭବେ ବଡ଼ପଣ ପାଇ ।
ଧର୍ମ ଫଳେ ତାକୁ କର ଚିରସ୍ଥାୟୀ,
ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର—ବାରିଧି.

---

୫୫୯—ଆଚମ୍ବିତ —ଅତର୍କିତ ଭାବରେ ୬୦୫। ଅନ୍ତିମ ବେଳ—ଶେଷ ସମୟ, ୬୦୭ । ଆବର୍ତ୍ତନ—ଘୂର୍ଣ୍ଣନ; ୬୧୧ । ଅନ୍ତକ—ଯମ; ୬୧୩ । ହୁସିଆର—ସାବଧାନ; ୬୧୯। ସଂସାର ବାରିଧି—ସଂସାର ରୂପକ ସମୁଦ୍ର ।

ଧର୍ମ ଏକା ସିନା ମହତ୍ୱ ପଣିଆ;
ଆଉ ବଡ଼ପଣ ଅଟେଇ ଦନଆ,
ବଡ଼ପଣ, ଭାଇ, ଏକା ସିନା ସେହି,
ଛଡ଼ାଇ କେହି ଯା ନ ପାରଇଁ ନେଇ,
ବଡ଼ପଣ ସେହି, ଅନ୍ୟେ ଯୁଝା ଯାର
ସୌରଭେ ଚହଟଥାଏ ଏ ସଂସାର,
ବଡ଼ପଣେ ସିନା ସେହି ତାକୁ ଗଣି,
ଯେଉଁ ବଡ଼ପଣ ଦ୍ୱିଲୋକ-ସାଧନୀ,
ସେହି ସିନା ବଡ଼ପଣ, ଯହିଁଲାଗି
ଅନ୍ତକର ବକ୍ର-ଦନ୍ତ ଯାଏ ଭାଙ୍ଗି,
ସେହି ବଡ଼ପଣେ ବଳାଅ ମତକ,
କାଳ ନ ପାରିବ ପଶି ଯା କଟକ
ହେଳା କରନ୍ତି ପାଇ ଏ ସୁବିଧା
ଲଭିବାକୁ ସେହି ବଡ଼ପଣ ସଦା,
ସଂସାରର ତୁଚ୍ଛସାର ବଡ଼ପଣ-
ଲାଳସାରୁ ନିଅ ବାହୁଡ଼ାଇ ମନ,
ଉଦାସୀନ ନେବେ ଦୁନିଆର ମାନ
ଦେଖି କର ମନ ଧର୍ମେ ଏକ ତାନ,
ରାଜ ଧର୍ମେ ଆତ୍ମ-ତତ୍ତ୍ୱେ ଦେଇ ମତ
ହଇ ହୋଇ ଲଭ ହଇତର ଗତ ।
ମଣ୍ଡି ଅଛୁ କପାଁ ଆସି ସଭା ଘର
ଉତ୍କଳ ଶେଖର ହେ ଚନ୍ଦ୍ରଶେଖର

---

୬୨୫ । ସୌରଭ – ସୁଗନ୍ଧ; ୬୨୭ । ଦ୍ୱିଲୋକ —ଇହଲୋକ ଓ ପରଲୋକ, ୬୨୯—ଅନ୍ତକର—ମହାକାଳ, ୬୩୪—ତୁଚ୍ଛସାର—ମୂଲ୍ୟହୀନ, ଅସାର ୬୩୬ । ଉଦାସୀନ—ଅନାସକ୍ତ ।

ଚନ୍ଦ୍ରୋପଜୀବୀର ପାର୍ଶ୍ୱ କି ଆଶାରେ
ପଶିଲ କାସର ସେବିତ କାସାରେ ?
କହ ଫେଣ୍ଡୁ, ପଡ଼ି କେଉଁ ଭ୍ରମ ଜାଲେ
ସତ୍ୟଲୋକୁଁ ଖସି ଆସିଲ ପାତାଳେ ? ।୬୪୫।

ଲୋଡ଼ ଅଛ କହେ ବିଶ୍ୱପୂଜାସ୍ପଦ,
ଖଦ୍ୟୋତନ ହୋଇ ଖଦ୍ୟୋତର ପଦ ?
ଏ ସମ୍ମାନେ ତୁମ୍ଭେ ହେବ କହେ ବଣା ?
ତୁମ୍ଭଙ୍କୁ ତ ଏହା ମୂଲ୍ୟ ଅଛି ଜଣା,
ଏ ସମ୍ମାନ-ମାଳା ମାନୁଛ କାଗଳେ ? ।୬୫୦।
ବିଶୁଦ୍ଧ ସ୍ୱର୍ଣ୍ଣେ କି ମୁଦ୍ରାବସେ ଭଳେ ?
ଜାଣେ ମୁଁ, ନଥିଲ ସମ୍ମାନ-ଆଶାର୍ଥୀ,
ସମ୍ମାନ ତୁମ୍ଭଙ୍କୁ ଲୋଡ଼ି ନେଲା ଯାଇ,
ତୁମ୍ଭ ମୁଖ୍ୟକର୍ମ ତପ ଆଚରିବା,
ତୁନଆର ଯଶେ ଯାଏ ଆସେ କିବା ? ।୬୫୫।

ଧନ୍ୟ; ଧନ୍ୟ; ଆହେ ତପସ୍ୱି-ସତ୍ତମ,
ମର୍ତ୍ତ୍ୟ-ଦେହେ ତୁମ୍ଭେ ପରିଜଳ ସମ !
ଦେଇଛନ୍ତି ଦିବ୍ୟଚକ୍ଷୁ ବାଗୀଶ୍ୱରୀ
ଦେଖିବାକୁ ମହାଭୂତି ମାହେଶ୍ୱରୀ,
ସବୁବେଳେ ଧ୍ୟାନ କରୁଛ ଭାସ୍ୱତୀ ।୬୬୦।

---

୬୪୩। କାସାର—ଗଡ଼ିଆ; କାସର—ମହିଷ; ୬୪୭। ଖଦ୍ୟୋତନ—ସୂର୍ଯ୍ୟ; ଖଦ୍ୟୋତ—ଜୁଳୁଜୁଳିଆ ପୋକ, ୬୫୨। ସମ୍ମାନ ଆଶାର୍ଥୀ—ସମ୍ମାନ ପାଇବାକୁ ଇଚ୍ଛୁକ, ୬୫୬। ତପସ୍ୱି-ସତ୍ତମ—ତପସ୍ୱୀ ଶ୍ରେଷ୍ଠ, ୬୫୭। ପରିଜଳ,—ପରିସ୍ରୁତ ଜଳ, ୬୫୯। ମାହେଶ୍ୱରୀ—ଦୁର୍ଗା, ଭୂତି—ଐଶ୍ୱର୍ଯ୍ୟ, ୬୬୦ । ଭାସ୍ୱତୀ— ଅତ୍ୟୁଜ୍ଜ୍ୱଳ ।

ହିରଣ୍ୟ-ଗର୍ଭର ମୂରତି ଶାଶ୍ୱତୀ,
ତୁମ୍ଭ ଆଗେ ଭ୍ରସେ ପ୍ରତିନେତ୍ରୋନ୍ମେଷେ
କୋଟି କୋଟି ବିଶ୍ୱ ସୀମାତୀତ ଦେଶେ,
କୋଟିଗ୍ରହ, ଉପଗ୍ରହ, ଧୂମକେତୁ
ତୁମ୍ଭ ତପେ ତୁଷ୍ଟ ବାଗ୍‌ଦେବୀ ସଙ୍କେତୁଁ । ୬୬୯ ।

କରୁଛନ୍ତି କେତେ ଲୀଳା କୁତୂହଳେ,
ଯାଦୋଗଣ ଯଥା ମହାର୍ଣ୍ଣବ-ଜଳେ,
ତୁମ୍ଭଙ୍କ ନିଶାରେ ନିତି ନବ ନବ
ଦେଖାନ୍ତି ନକ୍ଷତ୍ର ପୁରୁଷେ ତାଣ୍ଡବ,
ଜ୍ୟୋତିର୍ଲୋକବାସୀ ମହାମୁନିଙ୍କର । ୬୭୦ ।

ଜ୍ୟୋତିର୍ବିଦ, ତୁମ୍ଭେ ନିତ୍ୟ ସହଚର;
ରହିବ ତାବତ ଭବେ ତୁମ୍ଭ ଯଶ;
ଦୀପିବେ ଯାବତ ଏ ଜ୍ୟୋତି ଚ୍ଛାନ୍ଦସ,
ଚ୍ଛାନ୍ଦସ ବିଧିର ଅନୁଷ୍ଠାନ ଗୁରୁ
ସାଧ୍ୟ ହେଲା ଯେଣୁ ତୁମ୍ଭ ଗଣନାରୁ, । ୬୭୧ ।

ହେ ଉତ୍କଳ ମାତା-ଯୋଗ୍ୟତମ-ସୁତ !
ତୁମ୍ଭ ଯୋଗୁଁ ଆମ୍ଭେ ସର୍ବେ ହେଲୁ ପୂତ;
ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି,
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି,

---

୬୬୯। ହିରଣ୍ୟଗର୍ଭ—ବ୍ରହ୍ମା, ଶାଶ୍ୱତୀ—ଚିରସ୍ଥାୟୀ, ୬୬୯। ଭ୍ରସେ—ଘୂରୁଛନ୍ତି, ନେତ୍ରୋନ୍ମେଷ—ଆଖିର ପଲକ, ୬୬୭। ଯାଦୋଗଣ—ଜଳଜନ୍ତୁ ସମୂହ; ମହାର୍ଣ୍ଣବ—ମହାସମୁଦ୍ର, ୬୬୮। ନିଶା—ରାତ୍ରି, ୬୭୧। ସହଚର—ସଙ୍ଗୀ; ୬୭୩। ଚ୍ଛାନ୍ଦସ—ବୈଦିକ, ବେଦରେ କଥିତ, ୬୭୭। ପୂତ—ପବିତ୍ର।

ଏହାମେ, କୋଣାର୍କେ ଯା କୀର୍ତ୍ତି ସ୍ୱଚ୍ଛର । ୭୮୦ ।

ଯୋଗ୍ୟପୁଷ୍ପ ତୁମ୍ଭେ ସେହ ଉତ୍କଳର;
ମାତ୍ର କାଳ ମୁଖେ ସେ କୀର୍ତ୍ତି ବିମଳ
ଦେଇ ନିଜମୁଖେ ଏବେ ଯେ ଉତ୍କଳ
ବୋଳି ଦେଇଅଛୁ ଅଜ୍ଞାନର ମସୀ
ସେ ଉତ୍କଳେ ତୁମ୍ଭେ ଶ୍ମଶାନ-ତୁଳସୀ । ୭୮୫ ।

ତାରୂପେ ଉଇଁ ଉତ୍କଳ-ଗଗନେ
ରହିଲ ଅଜ୍ଞାନ-ମେଘ-ଆବରଣେ,
ଦୂରୁଁ ଦେଖି ତବ ଦିବ୍ୟ ଜ୍ୟୋତିରାଶି
ଚହ୍ନିଲେ ତୁମ୍ଭଙ୍କୁ ଦୂର ଦେଶ ବାସୀ,
ଉତ୍କଳ-ଉଦୟ-ଅଚଳେ ଭାସ୍କର । ୭୯୦ ।

ହେଲ ଭାରତର ଦ୍ୱିତୀୟ ଭାସ୍କର,
ମାତ୍ର ହେଲ ଯେହୁ ତୁମ୍ଭର ପ୍ରସୂତି
ନ ଚହ୍ନିଲା ସେ ତ ନିଜର ବିଭୂତି,
ଗୁଣଜ୍ଞ ଉତ୍କଳେ ଜଣେ କେହି ନାହିଁ

ଗୁଣୀନ୍ଦ୍ର, ତୁମ୍ଭର ହେବ ଗୁଣ-ଗାଥା । ୭୯୫ ।

---

୭୮୦। ଭାସ୍ୱର—ଦୀପ୍ତ, ୭୮୨।ବିମଳ-ନିର୍ମଳ, ୭୮୪। ମସୀ-କାଳି, ୭୮୫। ଶ୍ମଶାନ ତୁଳସୀ-ମଶାଣିରେ ଉଠିଥିବା ତୁଳସୀ ଗଛ, ୭୮୮ । ଚନ୍ଦ୍ରଶେଖରଙ୍କ ଜ୍ୟୋତିଷିକ ଗଣନା ପ୍ରଥମେ ପ୍ରଫେସର ଯୋଗେଶ ଚନ୍ଦ୍ର ରାୟ ବାହାର ଲୋକଙ୍କୁ ଜଣାଇଥିଲେ । ଇଂରେଜ ସରକାର ଏଥିପାଇଁ ତାଙ୍କୁ ମହାମହୋପାଧ୍ୟାୟ ଉପାଧି ଦେଇଥିଲେ । ୭୯୦ । ଭାସ୍କର—ସୂର୍ଯ୍ୟ, ୭୯୧ । ଭାସ୍କର—ଭାରତର ପ୍ରାଚୀନ ଜ୍ୟୋତିଷୀ ଭାସ୍କରାଚାର୍ଯ୍ୟ, ୭୯୨ । ପ୍ରସୂତି—ମାତା, ୭୯୩ । ବିଭୂତି···ଐଶ୍ୱର୍ଯ୍ୟ ।

*

ସକଳ ନ ସିଞ୍ଚି ଖାଲି ଦଣ୍ଡବତ
କରିବାକୁ ଛନ୍ତି ଲୋକ ଶତଶତ,
ଥାଉଁ କି ଶ୍ରୀ ରାମଚନ୍ଦ୍ର ନରରାଣ
ବୟସେ କିଶୋର ଜ୍ଞାନେ ବର୍ଷୀୟାନ,
ଥାଉଁ ଥାଉଁ ବାସୁଦେବ ନୃପବର ।

ବିଦ୍ୱାନ-ମରାଳ-କୁଳ-ପଦ୍ମାକର,
ନରେଶ ମହେନ୍ଦ୍ର ସ୍ୱଦେଶ ଗୌରବ,
ଗୁଣିବୃନ୍ଦ-ଅନ୍ନବନ୍ଧନ-ବାନ୍ଧବ,
ତୁମ୍ଭପର ଜ୍ଞାନ-ତରୁ ମଉଳିଲା
ଏହା ଦେଖିବାକୁ ବିଧି ଲେଖିଥିଲା ! ।

ଶୁଷ୍କବନ୍ଧ୍ୟ ଯଶ ସଙ୍ଗେ ଅର୍ଦ୍ଧାଶନ
ପ୍ରତିଭାର ପରା ଲଲାଟ-ଲେଖନ
ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା
ଦାରିଦ୍ର୍ୟ ତୁମ୍ଭର ସଙ୍ଗୀ ହେଲା ସଦା
ସଦା ଆହା, ରୋଗ ଯନ୍ତ୍ରଣାରେ କ୍ଷୀଣ, ।

---

୬୯୯ । ବର୍ଷୀୟାନ—ବୃଦ୍ଧ, ରାମଚନ୍ଦ୍ର—ମୟୂରଭଞ୍ଜର ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ, ୭୦୦ । ବାସୁଦେବ-ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳଦେବ, ୭୦୧ । ବିଦ୍ୱାନ—ପଦ୍ମାକର—ପଣ୍ଡିତ ରୂପକ ହଂସ-ମାନଙ୍କର ବିହାର ସରୋବର, ଅନେକ ପଣ୍ଡିତ ବାମଣ୍ଡା ରାଜାଙ୍କ ଠାରୁ ଉତ୍ସାହ ପାଉଥିଲେ; ନରେଶ—ରାଜା, ୭୦୫-ଶୁଷ୍କ—ଶୁଖିଲା । ବନ୍ଧ୍ୟ ନିଷ୍ଫଳ, ୭୦୩। ଅନ୍ନ—ବନ୍ଧନ-କାରଣ ନଥାଇ, ୭୦୭ । ଶୁଷ୍କ...ଲେଖନ—ପ୍ରତିଭାଶାଳୀ ଲୋକେ ଶୁଖିଲାଯଶ ପାଆନ୍ତି, ମାତ୍ର ପେଟକୁ ପୂରା ଖାଇବାକୁ ପାଆନ୍ତି ନାହିଁ । ୭୦୮ । ଲକ୍ଷ୍ମୀଙ୍କ ସପତ୍ନୀ—ସରସ୍ୱତୀ, ବରଦା—ଯେ ବର ଦିଅନ୍ତି ।

ଚିତ୍ତର ଦାରୁଣ ଚିନ୍ତାରେ ମଳିନ,
ନିରନ୍ତେ ତୁମ୍ଭଙ୍କ ସେହି ଚିନ୍ତା ଚିହ୍ନି
ଜ୍ୟୋତିଷ୍ମନ୍ତୁଁ ଆଣେ ଏ କ୍ଷୁଦ୍ର ମହୀକୁ
ଆହା, ଶୀର୍ଣ୍ଣ ଅଙ୍ଗ ଦିଶେ କେଡ଼େ ମ୍ଳାନ !
ପ୍ରାତେ ଦୀପ ଯଥା ଆସନ୍ନ-ନିର୍ବାଣ !

ସବୁବେଳେ ଜଳୁଅଛୁ ଚିନ୍ତାନଳେ,
ଏହାପରେ ପୁଣି କ୍ରୂର ଭାଗ୍ୟ ଫଳେ
ପ୍ରାକୃତ ପାଣବ ଶତ୍ରୁ ଅଧିକାରୀ
ତୁମ୍ଭପରେ କରେ ପ୍ରଭୁପଣ କାରି
ଅନ୍ୟକୁଳେ ଜନ୍ମି ଥିଲେ କେଉଁଜନ
ତୁମ୍ଭର ଆପଟ ହେବାକୁ ଭାଜନ
ନୁହନ୍ତା, ଆଜ ସେ ପାପ-ଧନ ଶୋଥୀ
ଲିଭାଇ ଦେବାକୁ ଲୋଡ଼େ ତୁମ୍ଭ ଜ୍ୟୋତି !
ଯାର ଈର୍ଷା ଯୋଗୁଁ ତୁମ୍ଭର ଏଦଶା
ଦେବହେ ରାଜା ହେଲେ ମନେ ସେହି ତୃଷା,
ରତନ କହିଁ ସେ ଖୋସିବ କିରୀଟେ ?
ଅନାଦରେ ତାହା ଦଳେ ପାଦ ପୀଠେ
ମୋତିମୂଲ୍ୟ କାହୁଁ ଜାଣିବ ଶବର ?
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର,
ଧୀରମଣି, ଏଥିଲାଗି ବିଚଳିତ

---

୭୧୪। ମ୍ଳାନ—ମଳିନ ୭୧୪ । ଶୀର୍ଣ୍ଣ—ଦୁର୍ବଳଶରୀର ୭୧୫ । ଆସନ୍ନ ନିର୍ବାଣ—ଲିଭି ଆସୁଥିବା, ୭୧୮ । ପ୍ରାକୃତ···କାରି—ଖଣ୍ଡପଡ଼ାର ରାଜା ଚନ୍ଦ୍ର ଶେଖରଙ୍କ ଉପରେ ନାନା ଅତ୍ୟାଚାର କରିଥିଲେ । ୭୨୧—ଭାଜନ —ଯୋଗ୍ୟ ୭୨୩ । ଶୋଥୀ-ଫୁଲରୋଗୀ, ୭୨୯ । ଆପଟ—ଛତ୍ରବାହକ, ୭୨୬ । କିରୀଟ—ମୁକୁଟ, ଶିରୋଭୂଷା, ୭୨୯ । ଗୁଞ୍ଜା—କାଇଁଚ ।

ହେବାର ତୁମ୍ଭର ନୁହଇ ଉଚିତ,
ମଳିନ କରଇ ସିନା ମୁଦ୍ରିତ୍ତିକ
ଧ୍ରୁବତାର୍-ଜ୍ୟୋତି ଉଲ୍‌କାର ଝଟକ ।
ଭୋଗ ବିଳାସର କୀଟ ଦୂନିଆର
ଅସାର, ତପସ୍ୱି, ତୁମ୍ଭେ ବଜ୍ରସାର ! ।୭୩୫

ଭୋଗ ବିଳାସୀଙ୍କ ଜୀବନ-ସଞ୍ଚିତ
କୋଟି କୋଟି ମୁଦ୍ରା ବ୍ୟୟେ ସୁଗଠିତ
ପ୍ରାସାଦ ସଜ୍ଜିତ ସୁପଣ୍ଡପଟିରେ
ମାଟିଦ୍ରବ୍ୟ ମିଶିଯିବ ସେ ମାଟିରେ ।
ମାତ୍ର କଳ୍ପଲର ଦର୍ପ ଚିତ୍ତ-ପ୍ରସୂତ ।୭୪୦

ଜ୍ୟୋତିଷ—ଦର୍ପଣ, ଦରିଦ୍ରର କୃତ,
'ସିଦ୍ଧାନ୍ତ ଦର୍ପଣ, ହେବ ନାହିଁ ଲୟ,

ନରଦେହେ ଥିବ ଯାବତ ହୃଦୟ । ।୭୪୩ ।

---

୭୩୫-ବଜ୍ରସାର-ବଜ୍ର ସମାନ, ହୀରାପରି ୭୩୮-ସୁପଣ୍ଡପାଟିରେ-ଅତ୍ୟନ୍ତ ସୁନ୍ଦର ଘରରେ, ୭୪୦ । ଚିତ୍ତପ୍ରସୂତ—ଜ୍ଞାନରଫଳ; ୭୪୧ । ସିଦ୍ଧାନ୍ତ ଦର୍ପଣ—ଚନ୍ଦ୍ରଶେଖରଙ୍କ ପ୍ରଣୀତ ଜ୍ୟୋତିଷଗ୍ରନ୍ଥ ।

# ପ୍ରଶ୍ନୋତ୍ତର--

୧—ବ୍ୟଙ୍ଗ କାବ୍ୟଭାବରେ 'ଦରବାର'ର ସାର୍ଥକତା ପ୍ରତିପାଦନ କର ।

ସମଗ୍ର ବିଶ୍ୱସାହିତ୍ୟରେ ବ୍ୟଙ୍ଗସାହିତ୍ୟର ଏକ ସ୍ୱତନ୍ତ୍ର ଭୂମିକା ରହିଛି । ସାଂପ୍ରତିକ କାଳରେ ବ୍ୟଙ୍ଗସାହିତ୍ୟର ଆବଶ୍ୟକତା ଗଭୀର ଭାବରେ ଅନୁଭୂତ ହେଉଅଛି । ବ୍ୟଙ୍ଗସାହିତ୍ୟ ବା ସାଟାୟାର ଲେଖକ ତୀକ୍ଷ୍ଣଧୀଶକ୍ତି ସମ୍ପନ୍ନ । ସମାଜ ଓ ଜୀବନକୁ ସେ ଗଭୀର ଭାବରେ ଅନୁଶୀଳନ କରେ । ସାମାଜିକ, ସାଂସ୍କୃତିକ ତଥା ରାଜନୀତିକ ଦୁର୍ନୀତି, ଓ ବ୍ୟଭିଚାରକୁ ଏ ଲେଖକ ବରଦାସ୍ତ କରିପାରେ ନାହିଁ । ତାଂର ଲେଖନୀ ମାଧ୍ୟମରେ ଦୁର୍ନୀତି ଓ ବ୍ୟଭିଚାରକୁ ଦୂରକରିବା ପାଇଁ ସେ ବ୍ୟଗ୍ର ହୋଇ ଉଠେ । ନିର୍ମମ ନିଷ୍ଠୁର ଭାବରେ ସେ ତାର ଲେଖନୀକୁ ଚଳାଏ । ସାମାଜିକ ତଥା ରାଜନୀତିକ ଦୋଷ ଦୁର୍ବଳତାକୁ ସେ କଠୋର ଭାବରେ ସମାଲୋଚନା କରେ । ବ୍ୟକ୍ତି ନିରପେକ୍ଷ ହୋଇ ଏବଂ ବ୍ୟକ୍ତିଗତ ଅସୂୟାକୁ ପରିତ୍ୟାଗ କରି ସେ ଦୋଷ ଦୁର୍ବଳତାକୁ ସମାଲୋଚନା କରେ । ସେ ଯେତେବେଳେ ସମାଲୋଚନା କରେ ସେତେବେଳେ ସ୍ଥାନ କାଳ ପାତ୍ର ଜ୍ଞାନକୁ ଭୁଲିଯାଏ । ପ୍ରିୟାପ୍ରୀତି ଭୁଲିଯାଏ । ତା'ନିକଟରେ ଗୋଟିଏ କଥା ସତ୍ୟରୂପେ ଦେଖାଦିଏ, ସେ ହେଉଛି ସମାଜ ଓ ରାଜନୀତିକୁ ସଂସ୍କୃତ କରିବା । ତେଣୁ ତାର ଲେଖା ହେଉଛି ଉଦ୍ଦେଶ୍ୟଧର୍ମୀ । ସମାଲୋଚିତ ବ୍ୟକ୍ତିକୁ ସେ ତୀକ୍ଷଣ ଅସିଧାର ଉପରେ ଛିଡ଼ା କରାଇ ଦେଇ ପରିଣତି ସମ୍ବନ୍ଧରେ ଆଦୌ ଚିନ୍ତା କରେ ନାହିଁ । ବାହାରକୁ ଏହା ହାସ୍ୟରସ ସୃଷ୍ଟି କରୁଥିଲେହେଁ ଏହାର ଅନ୍ତର୍ବାଣୀ ହେଉଛି ତୀବ୍ର ଆଘାତ ପ୍ରଦାନ କରିବା । Drydenଙ୍କ ମତରେ ବ୍ୟଙ୍ଗ ହେଉଛି ସମାଲୋଚନା କରିବା ପାଇଁ ଏକ ବଳିଷ୍ଠ ପଦ୍ଧତି । ସେ ଲେଖିଛନ୍ତି;—

"Satire has always shown among the rest
And is the boldest way; if not the best,

To tell man freely of their foulest faults
To laugh at their vain deeds and vain thougts"

ବ୍ୟଙ୍ଗକାର ତେଣୁ ସମାଜର ସଂସ୍କାର ପାଇଁ ବ୍ୟକ୍ତିବିଶେଷଙ୍କୁ ବ୍ୟଙ୍ଗ କରେ, କୌଣସି ଏକ ସମସ୍ୟାକୁ ମଧ୍ୟ ବିଦ୍ରୂପ କରେ । ବ୍ୟଙ୍ଗକାର ସ୍ୱଳ୍ପଭାଷୀ । ଅଳ୍ପ କଥାରେ ସେ ସମସ୍ୟାକୁ ଉତ୍ଥାପନ କରେ । ରାଧାନାଥ ଏହିପରି ଜଣେ ଦରଦୀ ହୃଦୟବାନ ଶିଳ୍ପୀ ଯେ କି ଜାତି ଓ ଦେଶର ମଙ୍ଗଳ ପାଇଁ ସଦା ସର୍ବଦା ଚିନ୍ତା କରୁଥିଲେ । ତତ୍କାଳୀନ ସାମାଜିକ ତଥା ପ୍ରଶାସନିକ ନାନାଦି ଦୁର୍ନୀତି ତାଙ୍କର ହୃଦୟକୁ କିପରି ଆନ୍ଦୋଳିତ କରିଥିଲା ତାର ଚିତ୍ର 'ଦରବାର' କାବ୍ୟରୁ ଦେଖିବାକୁ ମିଳିଥାଏ । ଦରବାରରେ କବି ରାଧାନାଥଙ୍କ ମନ୍ତବ୍ୟକୁ The sharpest social lash" ବୋଲି କୁହାଯାଇ ପାରେ । ସେ Drydenଙ୍କ ପରି ବ୍ୟକ୍ତି ନିରପେକ୍ଷ ଭାବରେ ସମାଲୋଚନା କରିଛନ୍ତି । ଯୋନାଥନ ସୁଇଫ୍ଟଙ୍କ ଭଳି ସେ ରାଜନ୍ୟମଣ୍ଡଳୀ ତଥା ସରକାରୀ କର୍ମଚାରୀମାନଙ୍କୁ ବିଦ୍ରୂପ କରିଛନ୍ତି । ଦରବାର କାବ୍ୟକୁ ନିଷ୍ପେଷିତ, ଅତ୍ୟାଚାର ଜର୍ଜରିତ, ଅବିଶ୍ୱର—ବିଦଳିତ କବି – ପ୍ରାଣର କାବ୍ୟକ ଆତ୍ମଲିପି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ଶେଷ ଜୀବନରେ ଯେପରି ଭାବରେ ନିଷ୍ପେଷିତ ହୋଇଥିଲେ ଏବଂ ଯେପରି ଭାବରେ ଅସୂୟାଗ୍ରସ୍ତ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ସମାଲୋଚିତ ହୋଇଥିଲେ ସେହି ଅନ୍ତର୍ବେଦନାର ମର୍ମବାଣୀହିଁ ନିକ୍ୱଣିତ ହୋଇଛି ଦରବାର କାବ୍ୟରେ । ତଥାପି କବି ଏହାକୁ ବ୍ୟକ୍ତି ସର୍ବସ୍ୱ ନ କରି ସାର୍ବଜନୀନ କରିପାରିଛନ୍ତି ।

ଦରବାର କାବ୍ୟରେ କବି ତତ୍କାଳୀନ ଅହଂଭାବାପନ୍ନ ରାଜନ୍ୟ-ମଣ୍ଡଳୀଙ୍କୁ ଯେପରି ସମାଲୋଚନା କରିଛନ୍ତି ଠିକ୍ ସେହିପରି ସରକାରୀ କର୍ମଚାରୀମାନଙ୍କୁ ମଧ୍ୟ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି । ପାଣ୍ଡିତ୍ୟ ତଥା ଜ୍ଞାନ ବିହୀନ ବ୍ୟକ୍ତିମାନେ ତୋଷାମଦଦ୍ୱାରା କିପରି ଉପାଧି ଲାଭ କରନ୍ତି ସେ ସମ୍ବନ୍ଧରେ କବି କଠୋର ମନ୍ତବ୍ୟ ପ୍ରକାଶ କରିଛନ୍ତି । ଉପାଧିଲାଳସାରେ ବ୍ୟକ୍ତିମାନେ କିପରି ଦରବାରର ରମଣୀୟ ମଞ୍ଚସ୍ଥଳରେ ବ୍ୟସ୍ତ ହୋଇ ପଡ଼ୁଥାନ୍ତି, କବି ଏହାକୁ ଲକ୍ଷ୍ୟକରି ବିଦ୍ରୂପ ବାଣ ତ୍ୟାଗ କରିଛନ୍ତି —

"ଏହିଛାର ଏହି ଅକୀର୍ତ୍ତିକର
ସମ୍ମାନ ସକାଶେ ଏତେ ବ୍ୟସ୍ତ ନର
ହା ଧିକ ! ଏ ତୁଚ୍ଛସାର ପଦ ପାଇଁ
ଦେଉଛନ୍ତି ଲୋକେ ସଂପଦ ଉଡ଼ାଇ ।"

ଆଜି ସମାଜରେ ଉପାଧି ରୂପକ ବ୍ୟାଧିର ବୃଦ୍ଧି ହୋଇଛି । ନ୍ୟାୟ ସୁଦୂର ପରାହତ । ସତ୍ୟ ଆଜି ଲୁକ୍କାୟିତ । ଭଣ୍ଡତା ମିଥ୍ୟା, ପ୍ରବଞ୍ଚନା ଆଜି ବୃଦ୍ଧି ଲାଭ କରିଛି । ଏହି "ଉପାଧିଲାଳସା-ରୂପି ମହାବ୍ୟାଧି" ଏପରି ବୃଦ୍ଧି ହୋଇଛି ଯେ ଲୋକମାନେ ତେଣୁ ଆଜି—

"କରୁଛନ୍ତି ଲୋକେ ଉପାଧି-ଆଶାରେ
ମନୁଷ୍ୟର ପୂଜା ଷୋଡ଼ଶୋ ପଚାରେ ।"

ଯିଏ ଆଜି ପରପଦଲେହନ କରି ପାରିଲା, ତୋଷାମଦର ବିଜୟ ବୈଜୟନ୍ତୀ ଉଡ଼ାଇ ପାରିଲା ସେହି ବ୍ୟକ୍ତି ଆଜି ପଦ ପଦବୀର ଅଧିକାରୀ ହୋଇ ପାରୁଛି । ମନୁଷ୍ୟର ଅର୍ଚ୍ଚନା ଲାଗି ତେଣୁ ଆଜି ପ୍ରତିଯୋଗିତା । ଏଥିପାଇଁ—

"ଦେବାପାଇଁ ତହିଁ ପୁଷ୍ପ ନେଲେ କେହି
ମାଳିଏ ମରନ୍ତି ଜରିମାନା ଦେଇ,"

କବି ତେଣୁ ଶ୍ୱାନପୁଚ୍ଛଧାରୀ ବ୍ୟକ୍ତିମାନଙ୍କୁ ନିର୍ମମ ସମାଲୋଚନା କରିଛନ୍ତି । ଯେଉଁମାନେ ଶାଶ୍ୱତକୁ ଛାଡ଼ି ନଶ୍ୱରପ୍ରତି ଆସକ୍ତ ସେମାନଙ୍କୁ ବିଦ୍ରୂପ କରିଛନ୍ତି । ଉପାଧିପାଇଁ ଆଜି ମନୀଷ ମନୀଷ ମଧ୍ୟରେ ସଂଗ୍ରାମ । ନିଜକୁ ବଡ଼େଇ ପାଇଁ ତେଣୁ ଆଜି ଦ୍ୱନ୍ଦ୍ୱ । କବି ତେଣୁ ତୋଷାମଦର ପ୍ରତିଯୋଗିତାକୁ ବିଦ୍ରୂପ କରି ଲେଖିଛନ୍ତି—

"ମଞ୍ଚପାଶେ କିପାଁ ଏତେ ଲୋକ ଠିଆ ?
ଲାଗିଅଛି ପରା ଆସନ କଳିଆ ।"

ଆସନ କରିଆଙ୍କୁ କବି କଠୋର ସମାଲୋଚନା କରିଛନ୍ତି । କିଏ ଉଚ୍ଚପଦବୀଧାରୀ ହୋଇଥିବାରୁ ଉଚ୍ଚ ଆସନର ଅଧିକାରୀ ବୋଲି କହେ, କେହି ଉଚ୍ଚ ବଂଶଧର ବୋଲି ଦାବୀ କରି ଅନ୍ୟକୁ ଅବଜ୍ଞା କରେ । କେହି ନିଜ ଧାର୍ମିକତାର ଆସ୍ଫାଳନ କରେ। କବି ଏମାନଙ୍କୁ ଜୀବନ୍ତ ଭାବରେ ଏହି କାବ୍ୟରେ ଦେଖାଇଅଛନ୍ତି । ପୋଲିସ କର୍ମଚାରୀମାନଙ୍କର ଅହମିକାର ଆସ୍ଫାଳନ ଏବଂ ଦୁର୍ନୀତିକୁ କବି ଯଥାର୍ଥ ଭାବରେ ବ୍ୟଙ୍ଗ କରି ଲେଖିଛନ୍ତି—

"ଆନ ବୋଲେ ମୁହିଁ ଅଟଇ ପୁଲିସ
ଥନା ମେଧେ ମୂଳ ପାରଇ ଲୁଲିଶ ।
କିଦୋଷୀ, କି ଅବା ଦୋଷହୀନ ନର
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର ।

"ଜଳପଗଡ଼ିକି କିଏ ନ ଡ଼ରେ" ଏକଥା କହି କବି ପୋଲିସ ସଂସ୍ଥାକୁ କଠୋର ସମାଲୋଚନା କରିଛନ୍ତି । ତୋଷାମଦକାରୀ ଡ଼ିପୋଟିମାନଙ୍କୁ ମଧ୍ୟ ସମାଲୋଚନା କରି ଲେଖିଛନ୍ତି—

"କେହି ବୋଲେ, " ମୁହିଁ ଅଟଇ ଡ଼ିପୋଟି
କଳା ଲୋକଙ୍କର ଉନ୍ନତର କୋଟୀ,
ଲଭିଅଛୁ ମୁହିଁ ବଳେ କହିଣଲେ
ମୋତେ ପୁଣି କିଏ ବସାଇବ ତଳେ ? "

ଏମନକି କବି ସଭାପତିଙ୍କର ଚପରାସୀକୁ ମଧ୍ୟ ସମାଲୋଚନା କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତି ନିଜନିଜର ଅହମିକାକୁ ନେଇ କିପରି ଅସ୍ଫାଳନ କରେ ତାକୁ ସେ ନିର୍ମମ ସମାଲୋଚନା କରିଛନ୍ତି । ଆଜି "ମୁଁ ମୁଁ କରି ଆତ୍ମା ମରନ୍ତି ସମସ୍ତେ ।" ଅହମିକା-ରୂପୀ ଅନ୍ଧକୂପରେ ପଡ଼ି ଆଜି ସମସ୍ତେ ଏହି ଅଳିକ ଉପାଧି ପାଇଁ ବ୍ୟସ୍ତ । କବି ତତ୍କାଳୀନ ପରପଦଲେହନକାରୀ ନକଲି ସାହେବମାନଙ୍କୁ କଠୋର ସମାଲୋଚନା କରିଛନ୍ତି । ପାଶ୍ଚାତ୍ୟ ଶିକ୍ଷା

ସଂସ୍କୃତିର ପ୍ରଭାବରେ କପଟ ଜାତୀୟ ପୋଷାକ, ଭାଷା ଓ ଭାବକୁ ଭୁଲି ମୟୂରର ପୁଚ୍ଛ ଗୁଞ୍ଜି ମୟୂର ବୋଲି ପରିଚୟ ଦେବାକୁ କୁଣ୍ଠାବୋଧ କରୁ ନ ଥିଲେ କବି ସେମାନଙ୍କୁ ମଧ୍ୟ କଠୋର ସମାଲୋଚନା କରିଛନ୍ତି ।

ସାହେବୀ ପୋଷାକ କେତୁ ଅବା ପିନ୍ଧି
ସପ୍ତିଟେ କହଇ ବଙ୍କା ବଙ୍କା ହିନ୍ଦୀ,
ଥରେ ଥରେ କାସି ସାହେବୀ ଠାଣିରେ
ପୋଛଇ ବଦନ ରୁମାଲ କାନରେ.
ପ୍ରକଟଇ ପୂର୍ଣ୍ଣ ସାହେବୀ ପଣିଆ
ଫରକଟା ଗୋଡ଼େ ହୁଏ ପୁଣି ଠିଆ !

ତତ୍‌କାଳୀନ ସମାଜରେ ଶିକ୍ଷିତ ଅର୍ଦ୍ଧ ଶିକ୍ଷିତ ବ୍ୟକ୍ତିମାନେ ସାହେବୀ ହେବାକୁ କପଟ ବ୍ୟସ୍ତହେଉଥିଲେ, ମାତୃଭାଷା ଏବଂ ଜାତୀୟ ପୋଷାକ ପରିତ୍ୟାଗ କରି ସାହେବୀ ପୋଷାକ ପରିଧାନ କରିବାକୁ କପଟ ଲାଳାୟିତ ହେଉଥିଲେ ତାର ଦୃଷ୍ଟାନ୍ତ ଏ ପ୍ରସଙ୍ଗରେ କବି ପ୍ରଦାନ କରିଛନ୍ତି । ବ୍ୟଙ୍ଗ ଲେଖକ ସଙ୍କୀର୍ଣ୍ଣ ମନୋଭାବ ନେଇ ଲେଖେ ନାହିଁ । ସଂସ୍କାର ମନୋବୃତ୍ତି ନେଇ ସେ ଲେଖେ । John Peter ତେଣୁ ଲେଖିଛନ୍ତି "satire tends to be sorrowful, often reflecting only a token desire for reform" ତେଣୁ ରାଧାନାଥ ହେଉଛନ୍ତି ତତ୍‌କାଳୀନ ଯୁଗର ବାର୍ତ୍ତାବହ । ସଂସ୍କାରକର ଦୃଷ୍ଟି ନେଇ ସେ ଜନତାର ଦରବାରରେ ଉଭାହୋଇ ଥିଲେ । ତେଣୁ ଯେଉଁମାନେ ଦୁଃଖି-ରଙ୍କିଙ୍କ ରକ୍ତଶୋଷି ଚପି ଦାତାପଣ ସାଜିଛନ୍ତି ସେମାନଙ୍କୁ ସେ ସମାଲୋଚନା କରିଛନ୍ତି । ସେମାନଙ୍କର ଭଣ୍ଡାମୀକୁ ପଦାରେ ପକାଇବାକୁ ଚେଷ୍ଟା କରିଛନ୍ତି । ଯେଉଁ-ମାନେ ଶ୍ୱେତାଙ୍ଗ ସ୍ତୁମ୍ଭରେ ମିଛସତ କହି ବାହାବା ନଅନ୍ତି ସେମାନଙ୍କର ପ୍ରତାରଣାକୁ ମଧ୍ୟ ସେ ସମାଲୋଚନା କରିଛନ୍ତି । ରାଜାମାନଙ୍କୁ ମଧ୍ୟ ସେ ବିଦ୍ରୂପ କରିଛନ୍ତି । ତେଣୁ ସେ ଲେଖିଛନ୍ତି—

"ରାଜଧର୍ମହେଲା ପ୍ରଜାଧନ ଲୁହା
ମନ୍ତ୍ରୀହେଲେ ଖଳ,ଖଣ୍ଡ; କାନକୁହା,

*

ଚଣ୍ଡି, ଦୁଃଖୀ, ରଙ୍କି, ଅରକ୍ଷିତ ଗଣ୍ଡ
ବିଦେଶୀଙ୍କି ଖୁଆଇଲେ କୁକ୍‌କୁଟାଣ୍ଡ
ନ ପାଇଲେ ଦୁଃଖୀ ପ୍ରଜା ଖୁଦକୁଣ୍ଡା
ନେଲେ ଘିଅ ଅଟା ସଙ୍ଗେ ଗ୍ରାଗମୁଣ୍ଡା ।

ଏହିପରି କବି ରାଧାନାଥ ତତ୍‌କାଳୀନ ସମାଜର ବିଭିନ୍ନ ବ୍ୟକ୍ତିଙ୍କୁ କଠୋର ସମାଲୋଚନା କରିଛନ୍ତି । ସେ ଥିଲେ ସତ୍ୟଦ୍ରଷ୍ଟା, ତେଣୁ ସେ ଅନ୍ୟାୟ ଓ ଦୁର୍ନୀତିକୁ ପ୍ରଶ୍ରୟ ଦେବାକୁ ରାଜି ନ ଥିଲେ । ସେଥିପାଇଁ 'ଦରବାର' କାବ୍ୟରେ ସେ କଠୋର ସମାଲୋଚନା କରିଛନ୍ତି । ସମାଜ ତଥା ରାଜଜାତିକୁ ଏବଂ ଶାସନ ପଦ୍ଧତିକୁ କଳଙ୍କମୁକ୍ତ କରିବା ପାଇଁ ଦରବାରରେ ଅଛି ପ୍ରଚ୍ଛନ୍ନ ପ୍ରେରଣା । ସେ ଦରଦୀ କବି ଭାବରେ ଏହାକୁ ବର୍ଣ୍ଣନା କରିଛନ୍ତି । ଏଥିରେ ବ୍ୟକ୍ତିଗତ ଅସୂୟା ନାହିଁ । ମାତ୍ର ସାର୍ବଜନୀନ ଭାବ ଚେତନାରେ ଏହା ଉଜ୍ଜ୍ୱଳିମନ୍ତ । ତେଣୁ 'ଦରବାର' କବି ରାଧାନାଥଙ୍କର ଏକ ସାର୍ଥକ ବ୍ୟଙ୍ଗାତ୍ମକ କାବ୍ୟ ।



ପ୍ର୨—'ଦରବାର' କାବ୍ୟରୁ ରାଧାନାଥଙ୍କର ଜାତୀୟ ଭାବସମ୍ବନ୍ଧରେ ଆଲୋଚନା କର ।

କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗ ପ୍ରବର୍ତ୍ତକ ଭାବରେ ସ୍ୱୀକୃତ ହୋଇ ଅଛନ୍ତି । ସରଳ ତରଳ ସାବଲୀଳ ଭାଷାବିନ୍ୟାସରେ ସେ ଯୁଗୀୟ ଚିନ୍ତାକୁ ମର୍ମସ୍ପର୍ଶୀ ଭାବରେ ବ୍ୟକ୍ତ କରିଛନ୍ତି । ବ୍ୟକ୍ତିଜୀବନର ଅନ୍ତର୍ବେଦନା କେତେକ କାବ୍ୟରେ ମର୍ମରିତ ହୋଇ ଉଠିଛି । ବିଭିନ୍ନ କାବ୍ୟରେ ତାଙ୍କର ଜାତୀୟ ଭାବଚେତନା ଚର୍ଚ୍ଚିତ ହୋଇଛି । କବିବର ରାଧାନାଥ ଏ ଜାତିକୁ ଗଭୀର ଭଲ ପାଉଥିଲେ । ଏହାର ନଦନଦୀ, ପାହାଡ଼ ପର୍ବତ, ଅରଣ୍ୟ କାନ୍ତାର ସବୁକିଛି ରାଧାନାଥଙ୍କ ତୁଳୀରେ କମନୀୟ ରୂପ ଧାରଣ କରି କାବ୍ୟକବିତାରେ ଚର୍ଚ୍ଚିତ ହୋଇଛି । 'ଚିଲିକା' ତାଙ୍କର ଜାତି-

ପ୍ରୀତିର ଚରମ ନିଦର୍ଶନ । ଦରବାର କାବ୍ୟରେ ଏଭଳି 'ସୁଯୋଗ ନ ଥିଲେହେଁ ପ୍ରସଙ୍ଗ କ୍ରମେ ସେ ତାଙ୍କର ଜାତୀୟ ଭାବରୁ ପ୍ରକ୍ଷିପ୍ତ କରି ବର୍ଣ୍ଣନା କରିଛନ୍ତି । ଜାତୀୟ ଦୁର୍ଗତିକୁ ସେ ଜୀବନ୍ତ ଭାବରେ ଏହି କାବ୍ୟରେ ଦେଖାଇ ଅଛନ୍ତି ।

ସର୍ବପ୍ରଥମେ କବିଙ୍କର ଦୃଷ୍ଟିକୁ ଆକର୍ଷଣ କରିଛି ,ଐତିହାସିକ ଦୁର୍ଗ ବାରବାଟୀ । ଓଡ଼ିଆ ଜାତିର ବୀରତ୍ୱର ପ୍ରତୀକ ଏଇ ବାରବାଟୀ । କୀର୍ତ୍ତି କାରିଟିମା ଡଟିମା ମାଳମା ଉତ୍କଳର ଏହି ଇତିହାସ ପ୍ରସିଦ୍ଧ ·ବାରବାଟୀର ଦୁର୍ଗତିରେ କବିଙ୍କର ପ୍ରାଣ ଦୁଃଖରେ ପରିପୂର୍ଣ୍ଣ ହୋଇ ଯାଇଛି । ତେଣୁ ସେ ସର୍ବପ୍ରଥମେ ଲେଖିଛନ୍ତି—

"ଉତ୍କଳର ପୂର୍ବକୀର୍ତ୍ତି ମୂର୍ତ୍ତି-ପୂତ
ବାରବାଟୀ ଆଜଯାକେ ସଙ୍କୀର୍ଭୂତ,
ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀର ରକ୍ତ ପିଣ୍ଡେ ଗଢ଼ାଯାଇ ମାଟି"

ଏ ପ୍ରସଙ୍ଗରେ କବିଙ୍କର ଜାତୀୟ ଚେତନା ପ୍ରକଟିତ ହୋଇ ଉଠିଛି । ଏ ଚେତନା 'ଚିଲିକା' କାବ୍ୟରେ ଯେପରି ଉତ୍କଳୀୟ ପୂର୍ବକୀର୍ତ୍ତିରାଜି ବର୍ଣ୍ଣନା କରିବାରେ ମୁଖର ହୋଇଥିଲା 'ଦରବାର' କାବ୍ୟରେ ସେପରି ନ ହୋଇ ଜାତିର ଅଧଃପତନ ପାଇଁ ବୌଦ୍ଧିକ ସଂସ୍କାର କରିଅଛି । ଠିକ୍ ଏହିଭଳି "ବିଂଶ ଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ ଦର୍ଶନ" ଶୀର୍ଷକ କବିତାରେ ସ୍ୱର୍ଗତ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ବାରବାଟୀ ଗଡ଼ର ଅତୀତ ଗୌରବ ସମ୍ବନ୍ଧରେ ବର୍ଣ୍ଣନା କରି କ୍ଷୋଭ ପ୍ରକାଶ କରିଛନ୍ତି । କବି ପଦ୍ମଚରଣ ପଟ୍ଟନାୟକ ମଧ୍ୟ "କେ ରାଧା ପ୍ରଥମ ଦର୍ଶନେ" କବିତାରେ ଏହି ଭଳି ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣର ପରିଚୟ ଦେଇ ଅଛନ୍ତି । କବି ରାଧାନାଥ 'ଦରବାର' କାବ୍ୟର ପ୍ରଥମରେ ଜାତିର ଅଧଃପତନର ସଙ୍କେତ ଦେଇ ତତ୍କାଳୀନ ସମାଜରେ ଉତ୍କଳୀୟମାନେ କପରି ନିଜର ଅତୀତର ଗୌରବ-ମୟ ପରମ୍ପରାକୁ ଭୁଲି ପରପଦଲେହନ କରିବାପାଇଁ ଉଦଗ୍ରୀବ ହେଉଥିଲେ

ତାର ଜୀବନ୍ତ ବର୍ଣ୍ଣନା କରିଛନ୍ତି । ଏହି ବର୍ଣ୍ଣନା ମାଧ୍ୟମରେ ଜାତୀୟ ଜୀବନକୁ ସଂସ୍କୃତ କରିବା ପାଇଁ ପ୍ରଚ୍ଛନ୍ନ ପ୍ରେରଣା ନିହିତ ରହିଛି । ନବ୍ୟ ଉତ୍କଳର ଏହି ସଭ୍ୟ ସମାଜ ଜାତୀୟ ଉନ୍ନତି ପରିବର୍ତ୍ତେ ନିଜ ନିଜର ଉନ୍ନତି ପାଇଁ ବ୍ୟସ୍ତ । ପଦପଦବୀ ପାଇଁ ପରସ୍ପର ମଧ୍ୟରେ ତୁମୁଳ ସଂଗ୍ରାମ । ତୋଷାମଦ ପାଇଁ ପୁଣି ପ୍ରବଳ ପ୍ରତିଯୋଗିତା । ତେଣୁ ଅତୀତର କୀର୍ତ୍ତିକରିଟିନୀ ଦୁର୍ଗମାଳିନୀ କାନନ କୁନ୍ତଳା ତଟିନୀ ମେଖଳା ସ୍ୱର୍ଣ୍ଣପ୍ରସୂ ଉତ୍କଳ ଆଜି ଶ୍ରୀହୀନା । ଏଥିପାଇଁ କବି କ୍ଷୋଭରେ ଲେଖିଛନ୍ତି—

"କି ଥିଲା ଏ ରାଜ୍ୟ, କି ହୋଇଛି ଆଜି !"

ପୁଣି ତତ୍କାଳୀନ ସମାଜରେ ଏ 'ଦେଶର ଶିକ୍ଷିତ ବ୍ୟକ୍ତିମାନେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ପ୍ରଭାବରେ ଆସି ଏ ଦେଶର ଜାତୀୟ ସଂସ୍କୃତିକୁ ଘୃଣା କରିବାକୁ ଲାଗିଥିଲେ । ଏ ଦେଶର ଭାଷା, ପୋଷାକ, ଖାଦ୍ୟ, ଚଳଣି ସବୁ ଯେପରି ସେମାନଙ୍କ ପକ୍ଷରେ ଲଜ୍ଜାଜନକଥିଲା । ତେଣୁ ରାଧାନାଥ କଠୋର ଭାବରେ ସେମାନଙ୍କୁ ସମାଲୋଚନା କରିଛନ୍ତି । ନକଲି ସାହେବ ମାନଙ୍କୁ ବିଦ୍ରୂପ କରିଛନ୍ତି । ସେ ଲେଖିଛନ୍ତି ।—

ସାହେବୀ ପୋଷାକ କେହୁ ଅବା ପିନ୍ଧି
ସର୍କିଟେ କହଇ ବଙ୍କା ବଙ୍କା ହିନ୍ଦୀ,
ଥରେ ଥରେ ବସି ସାହେବୀ ଠାଣିରେ
ପୋଛଇ ବଦନ ରୋମାଲ କାନିରେ,
ପ୍ରକଟାଇ ପୂରା ସାହେବୀ ପଣିଆ
ଫରକଟା ଗୋଡ଼େ ହୁଏ ପୁଣିଠିଆ,

ଜାତୀୟ ଜୀବନରେ ପାଶ୍ଚାତ୍ୟ ଅନୁକରଣ ଭାବ ବୃଦ୍ଧି ପାଉଥିବାରୁ କବି ରାଧାନାଥ ସେହି ଅନୁକରଣକାରୀ ବ୍ୟକ୍ତିମାନଙ୍କୁ ଏହା ଦ୍ୱାରା ବ୍ୟଙ୍ଗ ବିଦ୍ରୂପ କରିଛନ୍ତି । ଜାତୀୟ ଜୀବନକୁ କଳଙ୍କମୁକ୍ତ କରି ସୁନ୍ଦର କରିବାପାଇଁ ଏହାମଧ୍ୟରେ ଅଛି ପ୍ରଚ୍ଛନ୍ନ ପ୍ରେରଣା । କବି ପୁଣି ଅତୀତ ଉତ୍କଳର

ଗୌରବମୟ କାହାଣୀକୁ ପ୍ରସଙ୍ଗ କ୍ରମେ ତୁଳନାତ୍ମକ ଭାବରେ ବର୍ଣ୍ଣନା କରିଛନ୍ତି । ଯେଉଁ ବୀର ଉତ୍କଳୀୟମାନେ ଜାତିର ମହତ୍ତ୍ୱ ରକ୍ଷା କରିବା ପାଇଁ ରଣାଙ୍ଗନରେ ଜୀବନ ଦାନ କରୁଥିଲେ ସେହିମାନଙ୍କର ଦାୟାଦ ହୋଇ ଆଜି ଉତ୍କଳୀୟମାନେ କାନ୍ତା-ପରିଭ-କାନନରେ ଆତ୍ମଗୋପନ କରୁଛନ୍ତି । ତେଣୁ କବି ବ୍ୟଙ୍ଗ କରି ଲେଖିଛନ୍ତି—

''ମନେନାହିଁ ତୁମ୍ଭେ କାହାର ସନ୍ତାନ
କେଶରି-ଔରସେ ତୁମ୍ଭେ କି ଶ୍ୱାନ !''

ସେ ପୁଣି ଅତୀତର ବୀର ଉତ୍କଳୀୟମାନଙ୍କର ଗୌରବ ଗାନ କରିବାକୁ ଯାଇ ଲେଖିଛନ୍ତି—

''ଥିଲେ ଆଗେ ଯେହୁ ଉତ୍କଳର ସ୍ୱାମୀ
ବହ୍ନି ଶିଖାପରି ସଦା ଊର୍ଦ୍ଧ୍ୱଗାମୀ ।
ତୁମ୍ଭେ ହୋଇ ସେହି ବଂଶର ସନ୍ତତି
ଜଳଧାରା ପରି ହେଲ ଅଧଃଗତି ।

ଅତୀତରେ ଉତ୍କଳୀୟମାନେ ଥିଲେ ପରମ ଉଦାର । ସମଗ୍ର ରାଜ୍ୟକୁ ଏକ ପରିବାର ଭାବରେ ବିବେଚନା କରୁଥିଲେ । ମାତ୍ର ଆଜି ପରସ୍ପର ମଧ୍ୟରେ କଳହ ଓ ଦ୍ୱନ୍ଦ୍ୱ ଦେଖାଦେଇଛି । ସମସ୍ତେ ଆଜି ଭୋଗର ଉପାସକ । କିନ୍ତୁ କବି ସାମନ୍ତ ଚନ୍ଦ୍ରଶେଖରଙ୍କ ଗୌରବଗାନ ପ୍ରସଙ୍ଗରେ ଉତ୍କଳୀୟ ମହିମାର ଜୟଗାନ କରିଛନ୍ତି । ସେ ତାଙ୍କୁ ଉତ୍କଳ-ମାତାର ଯୋଗ୍ୟତମ-ସୁତ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କରି ଯୋଗୁଁ ଉତ୍କଳ ପବିତ୍ରିତ ହୋଇଛି । ତେଣୁ ସେ ସାମନ୍ତ ଚନ୍ଦ୍ରଶେଖରଙ୍କର ମହିମା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

''ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି

"ତୋମ୍ଭେ; କୋଣାର୍କେ ଯା କୀର୍ତ୍ତି ସ୍ୱପ୍ନର
ଯୋଗ୍ୟପୁତ୍ର ତୁମ୍ଭେ ସେହ୍ନ ଉତ୍କଳର ।"

ଏ ପ୍ରସଙ୍ଗରେ କବିଙ୍କର ଜାତୀୟ ମମତା ମଧ୍ୟ ପ୍ରକଟିତ ହୋଇଛି । କିନ୍ତୁ ଉତ୍କଳୀୟମାନେ ଅତୀତର ସମସ୍ତ ଗୁଣଗରିମାକୁ ଭୁଲି ଯାଇଥିବାରୁ କବି କ୍ଷୋଭ ପ୍ରକାଶ କରିଛନ୍ତି । ପ୍ରତ୍ୟେକ ସ୍ଥଳରେ ସେ ବୌଦ୍ଧିକ ବ୍ୟଙ୍ଗ ସୃଷ୍ଟି କରି ଜାତିର ଅନ୍ତର୍ଚେତନାକୁ ଜାଗ୍ରତ କରିବା ପାଇଁ ପ୍ରେରଣା ଦେଇଛନ୍ତି । ଜାତିର ଅଧଃପତନରେ ଜାତୀୟପ୍ରାଣ କବି ରାଧାନାଥଙ୍କ ଅନ୍ତରରେ ଯେଉଁ କ୍ଷୋଭ ଓ ବେଦନା ଦେଖା ଦେଇଥିଲା, ଯେଉଁ ହାର୍ଦ୍ଦିକ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାର ବାସ୍ତବ ଆଲୁଳିପିହିଁ ଦରବାର କାବ୍ୟରେ ବର୍ଣ୍ଣିତ ହୋଇଛି । କବି ତାର ଲେଖନୀ ମାଧ୍ୟମରେ ଜାତୀୟ ଅଧଃଗତିକୁ ଦେଖାଇ ଦିଏ । ଘନ ଅନ୍ଧକାର ମଧ୍ୟରେ ଜ୍ଞାନାଲୋକ ଜାଳି ଜାତିର ପ୍ରାଣରେ ନୂତନ ଚେତନା ସୃଷ୍ଟି କରେ । ଏହି ଦୃଷ୍ଟିରୁ ବିଚାର କଲେ ଦରବାର କାବ୍ୟରେ କବି ରାଧାନାଥଙ୍କର ଜାତୀୟ ଭାବ ଯଥାର୍ଥ ଭାବରେ ପ୍ରକଟିତ ହୋଇ ପାରିଛି ।

---

୩ । ସାମନ୍ତ ଚନ୍ଦ୍ରଶେଖରଙ୍କପ୍ରତି କବି ରାଧାନାଥଙ୍କର ଦୃଷ୍ଟିକୋଣ ସମ୍ବନ୍ଧରେ ଆଲୋଚନା କର ।

କବିବର ରାଧାନାଥ ଥିଲେ ଉଦାର ସ୍ୱଭାବସମ୍ପନ୍ନ ବ୍ୟକ୍ତି । ସେ ପ୍ରତିଭାର ଥିଲେ ପରମ ଉପାସକ । ଯେଉଁବ୍ୟକ୍ତିର ପ୍ରତିଭା ଉଚ୍ଚକୋଟୀର ଥିଲା ସେ ସେହି ବ୍ୟକ୍ତି ନିକଟରେ ନତମସ୍ତକ ହୋଇ ପଡ଼ୁଥିଲେ ଏବଂ ସେହି ପ୍ରତିଭାବାନ୍ ବ୍ୟକ୍ତିର ଗୁଣ କୀର୍ତ୍ତନ କରିବାରେ ଶତ ମୁଖର ହୋଇ ପଡ଼ୁଥିଲେ । ପ୍ରତିଭାର ଅନାଦରରେ ସେ ମର୍ମାହତ ହେଉଥିଲେ । ବିଶେଷକରି ତତ୍କାଳୀନ ଉତ୍କଳରେ ପ୍ରକୃତ ପ୍ରତିଭାବାନ ବ୍ୟକ୍ତି କପରି ଦୂଜିତ ନ ହୋଇ ପ୍ରତିଭାହୀନ ବ୍ୟକ୍ତିମାନେ ସମ୍ମାନିତ ହେଉ ଥିଲେ । ସେଥିପ୍ରତି ରାଧାନାଥ ବିଦ୍ରୂପ

କରିଛନ୍ତି । ସାମନ୍ତ ଚନ୍ଦ୍ରଶେଖରଙ୍କଭଳି ପ୍ରତିଭାବାନ ବ୍ୟକ୍ତି ଉତ୍କଳ ପରି ରାଜ୍ୟରେ ଜନ୍ମ ହୋଇଥିବାରୁ କେତେ ସେ ଯଥୋଚିତ ସମ୍ମାନରୁ ବଞ୍ଚିତ ହୋଇଥିଲେ କବି ଯଥାର୍ଥ ଭାବରେ ଦରବାର କାବ୍ୟରେ ବର୍ଣ୍ଣନା କରିଛନ୍ତି । ଏଥିରେ ସେ ସାମନ୍ତଚନ୍ଦ୍ରଶେଖରଙ୍କର ଅସାମାନ୍ୟ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି ଏବଂ ପ୍ରସଙ୍ଗ କ୍ରମେ ସେ କିପରି ରାଜଦତ୍ତ ଉପାଧି ଠାରୁ ଆହୁରି ମହାନ୍ ସେ ସମ୍ବନ୍ଧରେ ଆଲୋଚନା କରିଛନ୍ତି ।

୧୮୯୭ ସାଲରେ ହୋଇଥିବା ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ, ଉପାଧିରେ ଭୂଷିତ କରାଯାଇଥିଲା । ଏହି ରାଜଦତ୍ତ ସମ୍ମାନ ସାମନ୍ତଚନ୍ଦ୍ରଶେଖରଙ୍କ ପକ୍ଷରେ ଅତି ତୁଚ୍ଛ । ତେଣୁ କବି ରାଧାନାଥ ଏ ପ୍ରସଙ୍ଗରେ ଉତ୍କଳ ଶେଖର ସାମନ୍ତ ଚନ୍ଦ୍ରଶେଖରଙ୍କୁ କହୁଛନ୍ତି—

"ଲୋଡ଼ୁ ଅଛ କି ହେ ବିଶ୍ୱ-ପୂଜାସ୍ପଦ
ଖଦ୍ୟୋତଜନ ହୋଇ ଖଦ୍ୟୋତର ପଦ ?
ଏ ସମ୍ମାନେ ତୁମ୍ଭେ ହେବ କି ହେ ବଣା ?
ତୁମ୍ଭଙ୍କୁ ତ ଏହା ମୂଲ୍ୟ ଅଛି ଜଣା ।

ଚନ୍ଦ୍ରଶେଖର ଅସାମାନ୍ୟ ପ୍ରତିଭାର ଅଧିକାରୀ । ତାଙ୍କୁ ସମ୍ମାନ କରିବାକୁ ଓଡ଼ିଶାରେ ଲୋକ ନାହାନ୍ତି । ସେ ସମ୍ମାନ-ଆଶାୟୀ ନ ଥିଲେ । ସେ ନର ଶରୀର ଧାରଣ କରି ମଧ୍ୟ ଅମର ହେଲେ । ମୃଣ୍ମୟ ଶରୀର ସବୁଦିନ ପାଇଁ ତାଙ୍କର ମାଟିରେ ମିଶିଯାଇଛି ସତ ମାତ୍ର ସେ ମୃତ୍ୟୁଂଜୟୀ । ତେଣୁ କବି ତାଙ୍କୁ ଯଥାର୍ଥରେ ଲେଖିଛନ୍ତି—

"ଧନ୍ୟ; ଧନ୍ୟ; ଆହେ ତପସ୍ୱି-ସତ୍ତମ
ମର୍ତ୍ତ୍ୟେ-ଦେହେ ତୁମ୍ଭେ ପରାଜିଲ ଯମ ।"

ଅନନ୍ତ ଆକାଶର ରହସ୍ୟକୁ ସେ ଉନ୍ମୋଚିତ କରିଥିଲେ । କୋଟି କୋଟି ଗ୍ରହ, ଉପଗ୍ରହ, ନକ୍ଷତ୍ର, ଧୂମକେତୁ ଇତ୍ୟାଦିର ଗତିଷ୍ଥିତ ସେ

ନିରୂପଣ କରିଥିଲେ । ସେ ହେଉଛନ୍ତି ଉତ୍କଳ ମାତାର ଯୋଗ୍ୟତମ ସନ୍ତାନ । ଶ୍ମଶାନ ତୁଳସୀ ଚିହ୍ନିପାରିଲେ ନାହିଁ । ମାତ୍ର ବିଦେଶରେ ତାଙ୍କର ସମ୍ମାନ ବଢ଼ିଥିଲା । ତେଣୁ କବି ଲେଖିଛନ୍ତି—

ଦୂରୁ ଦେଖି ତବ ଦିବ୍ୟ ଜ୍ୟୋତିରାଶି
ଚିହ୍ନିଲେ ତୁମ୍ଭଙ୍କୁ ଦୂର ଦେଶବାସୀ ।

× × × ×

ମାତ୍ର ହେଲା ଯେହ୍ନୁ ତୁମ୍ଭର ପ୍ରସୂତି
ନ ଚିହ୍ନିଲେ ସେତ ନିଜର ବିଭୂତି ।
ଗୁଣଜ୍ଞ ଉତ୍କଳେ ଜଣେ କେହ୍ନୁ ନାହିଁ
ଗଣୀନ୍ଦ୍ର, ତୁମ୍ଭର ହେବ ଗୁଣ-ଗ୍ରାହୀ ।

ଯେଉଁ ପ୍ରତିଭାବାନ ବ୍ୟକ୍ତି ସାମନ୍ତ ଚନ୍ଦ୍ରଶେଖରଙ୍କର ପାରିବାରିକ ଜୀବନ ଦୁଃଖଦ ଏବଂ ଅସ୍ତ୍ରୁଳ ଥିଲା । ଦାରିଦ୍ର୍ୟ ତାଙ୍କର ଥିଲା ଚିର ସହଚର । ନିରନ୍ତର ଋଣର ଦାରୁଣ ଚିନ୍ତାରେ ସେ ମ୍ରିୟମାଣ ହୋଇ ପଡ଼ୁଥିଲେ । ପାରିବାରିକ କଳହମଧ ତାଙ୍କୁ ଚିନ୍ତାଗ୍ରସ୍ତ କରିଥିଲା । କବି ତାଙ୍କୁ ସାନ୍ତ୍ୱନା ଦେଇ ସମବେଦନା ପ୍ରକାଶ କରି ଲେଖିଛନ୍ତି ଯେ ଶ୍ରୀରାମଚନ୍ଦ୍ର, ବସୁଦେବ, ମହେନ୍ଦ୍ର ପ୍ରଭୃତି ସ୍ୱନାମଧନ୍ୟ ରାଜନ୍ୟବର୍ଗ ଥାଉଁ ଥାଉଁ—

"ତୁମ୍ଭପରି ଜ୍ଞାନ ତରୁ ମଉଳିଲା
ଏହା ଦେଖିବାକୁ ବିଧି ଲେଖିଥିଲା
ଶୁଷ୍କ, ବନ୍ଧ୍ୟପରି ସଙ୍ଗେ ଅର୍ଦ୍ଧାଙ୍ଗିନୀ
ପ୍ରତିଭାର ପରି ଲଲାଟ ଲିଖନ ।"

କବି ସାମନ୍ତ ଚନ୍ଦ୍ରଶେଖରଙ୍କର ଗୌରବଗାନ କରିବାରେ ଶତ-ମୁଖର ହୋଇ ପଡ଼ିଛନ୍ତି । ତାଙ୍କୁ ଉତ୍କଳରେ ଯଥୋଚିତ ସମ୍ମାନ ମିଳି ନଥିଲେହେଁ ସାନ୍ତ୍ୱନା ଦେଇଛନ୍ତି । ଶେଷରେ କବି ତାଙ୍କୁ ସାନ୍ତ୍ୱନା ଦେଇ ଲେଖିଛନ୍ତି ଯେ ସଂସାରରେ ଭୋଗ, ବିଳାସ, ଧନ ଏସବୁ କ୍ଷଣିକ, ମାଟିରେ

ଏମାନେ ମିଶିଟିବେ ସବୁଦିନ ପାଇଁ । ମାତ୍ର ''କୀର୍ତ୍ତିଯସ୍ୟ ସଃଜୀବତି'' । କାଳ ବକ୍ଷରେ ସେ ହୁଏ ଚିରଂଜୀବୀ । କାଳ ତା' ନିକଟରେ ପରାସ୍ତମାନେ । ତେଣୁ କବି ଲେଖିଛନ୍ତି—

ମାତ୍ର ଉତ୍କଳର ଦର୍ପ ଚନ୍ଦ୍ର-ପ୍ରସୂତି
ଜ୍ୟୋତିଷ ଦର୍ପଣ, ଦଶଦ୍ରର କୃତି,
ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ,
ନର ଦେହେ ଥିବ ଯାବତ ହୃଦୟ ।''

କବିବର ରାଧାନାଥ ଯଥାର୍ଥରେ ଚଲ୍ଲୀର ଗ୍ରାହକ । ସେ ଗୁଣିଙ୍କୁ ଆଦର କରିଛନ୍ତି ଏବଂ ଯଥୋଚିତ ସମ୍ମାନ ଦେବାପାଇଁ ଚେଷ୍ଟା କରିଛନ୍ତି । ଦରବାର କାବ୍ୟରେ ସେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ଶାଶ୍ୱତ କରିଯାଇଛନ୍ତି ।



୪ । ଦରବାର କାବ୍ୟରୁ କବିଙ୍କର ଜୀବନ ଦର୍ଶନ ସମ୍ବନ୍ଧରେ ଆଲୋଚନା କର ।

" Every poet is a philo sopher" ପ୍ରତ୍ୟେକ କବି ଜଣେ ଜଣେ ଦାର୍ଶନିକ । ମାତ୍ର ଦର୍ଶନ ତତ୍ତ୍ୱର ବ୍ୟାଖ୍ୟା କରିବା ଏମାନଙ୍କର ଧର୍ମନୁହେଁ । କାବ୍ୟ କବିତାରେ ଜୀବନର କଳାତ୍ମକ ରୂପ ଦେଉଁ ଦେଉଁ ଜୀବନ ଓ ଜଗତ ପ୍ରତି ସେମାନଙ୍କର ଦାର୍ଶନିକ ଦୃଷ୍ଟିକୋଣ ଫୁଟି ଉଠେ । କବି ରାଧାନାଥଙ୍କର ଦାର୍ଶନିକ ଦୃଷ୍ଟିକୋଣର ପରିଚୟ ତାଙ୍କର ବିଭିନ୍ନ କାବ୍ୟରୁ ମିଳିଥାଏ । ସେ କେତେବେଳେ ବିଷାଦବାଦୀ, କେତେବେଳେ ଭାଗ୍ୟ ବାଦୀ ପୁଣି କେତେବେଳେ ପ୍ରକୃତିର କମନୀୟ ରୂପବିଳାସରେ ଆନନ୍ଦବାଦୀ । ମୁଖ୍ୟତଃ ସେ ଭାଗ୍ୟବାଦୀ ଏବଂ ବିଷାଦବାଦୀ । ନିଜ ଜୀବନର ଦୁଃଖଦ ଏବଂ ଅଶ୍ରୁଳ କାହାଣୀ ତାଙ୍କୁ ଏପରି ବିଷାଦବାଦୀ ଏବଂ ଭାଗ୍ୟବାଦୀ ହେବାକୁ ବାଧ



କରିଛି । ଯନ୍ତ୍ରଣା ଜର୍ଜରିତ ରୋଗାକ୍ରାନ୍ତ ଜୀବନ ସହିତ ପ୍ରଶାସନିକ କ୍ଷେତ୍ରରେ ତଥା ସାହିତ୍ୟକ୍ଷେତ୍ରରେ ତାଙ୍କ ପ୍ରତି ଅସୂୟା ପ୍ରଣୋଦିତ ଆକ୍ରମଣ ତାଙ୍କୁ ଏପରି ହେବାକୁ ବାଧ୍ୟ କରିଛି । ତଳକାରେ କବିଙ୍କର ହାହୁତାଶମୟ ଜୀବନର ଚିତ୍ର ପ୍ରକଟିତ ହୋଇଥିଲାବେଳେ 'ଦରବାର' କାବ୍ୟରେ କବି ସାର୍ବଜନୀନ ମାନବିକ ଦୃଷ୍ଟିକୋଣର ପରିଚୟ ଦେଇଅଛନ୍ତି ।

ସେଥିଲେ ଶାଶ୍ୱତର ଉପାସକ । ନଶ୍ୱର ଉନ୍ନତି ପାଇଁ ସେ ଚେଷ୍ଟିତ ନଥିଲେ । ସେ ଜାଣିଥିଲେ ମଣିଷର ଶରୀର ମାଟିର କଳେବର । ଏହାଦିନେ ମାଟିରେ ମିଶିଯିବ । ମାତ୍ର ଚିରଂଜୀବୀ ହୋଇ ରହିବ କୀର୍ତ୍ତି । ମଣିଷ ଅହମିକାର ଅସ୍ଫାଳନ କରେ । ମୁଁ ହିଁର ବଢ଼େଇ କରେ । ନିଜକୁ ସର୍ବ-ଶ୍ରେଷ୍ଠବୋଲି ବିବେଚନା କରେ । ମାତ୍ର ଏହା କ୍ଷଣିକ, କାଳହସ୍ତରେ ଏସମସ୍ତଙ୍କ ଭାଗ୍ୟ ଡୋରି ବନ୍ଧା । ଦରବାର କାବ୍ୟରେ ଏହାର ବହୁଦୃଷ୍ଟାନ୍ତ ରହିଛି । ମନୁଷ୍ୟତା ହୀନ ସେବା-ପୀଠରେ ଉପାଧି-ଲାଳସା-ରୂପୀ ମହାବ୍ୟାଧି କିପରି ସାତ୍ତ୍ୱିକ ଧର୍ମର ପ୍ରତିବାଦୀ ହୋଇ ଦେଖାଦେଇଛି ସେ ସଂକ୍ରାନ୍ତରେ ସେ ଉଲ୍ଲେଖ କରିଛନ୍ତି । ଯେଉଁମାନେ ଶାଶ୍ୱତକୁ ଛାଡ଼ି ନଶ୍ୱରର ଉପାସନା କରୁଛନ୍ତି ସେମାନଙ୍କୁ ତେଣୁ ସତର୍କ କରାଇ ଲେଖିଛନ୍ତି—

"ଧିକ ଧିକ ଆତ୍ମା ଜାଣିଶୁଣି ନରେ<br>
ଶାଶ୍ୱତକୁ ଛାଡ଼ି ଆସକ୍ତ ନଶ୍ୱରେ ।"

ସେ ପଦ ପଦବୀ ପାଇଁ ହେଉଥିବା ଅହମିକାର ପ୍ରତିଯୋଗିତାକୁ ନିନ୍ଦା କରିଛନ୍ତି । ବିଦ୍ରୂପ କରନ୍ତନ୍ତି ଉଚ୍ଚଆସନ ଅଭିଳାଷୀ ବ୍ୟକ୍ତିମାନଙ୍କୁ । ସେ ଅହମିକାଗ୍ରସ୍ତ ବ୍ୟକ୍ତିଙ୍କୁ ତୁଚ୍ଛବୋଲି ଜ୍ଞାନ କରିଛନ୍ତି । ଅହଂସର୍ବସ୍ୱ ମଣିଷକୁ ତେଣୁ ଚେତାବନୀ ଶୁଣାଇ ଲେଖିଛନ୍ତି—

"ମଣିଷିମା ଆପଣାକୁ ବଡ଼କରି<br>
ମାତ୍ର କଥା—ବୃଷ ଦେହେ ମଶାପରି,<br>
ମଞ୍ଚରେ କାହାର ପ୍ରବେଶ ପ୍ରସ୍ଥାଣେ<br>
ଓଜନ ଉଶ୍ୱାସ ମଞ୍ଚତ ନ ଜାଣେ !

ସେଥିଲେ ଉଦାର ମାନବବାଦୀ କବି । ତାଙ୍କ ବିଚାରରେ ସମସ୍ତେ ସମାନ । ତେଣୁ ସେ ଲେଖିଛନ୍ତି—

"ଦେଖ ସାବଧାନେ ଜ୍ଞାନ-ନେତ୍ର ଫେଇ
ତୁମ୍ଭ ମଧ୍ୟେ ସାନ ବଡ଼ନାହିଁ କେହି ।
ସାନ ବଡ଼ ଜ୍ଞାନ ଭେଦକର ଉଆଣ
ଭେଦ ଗଲେ କେହି ନାହିଁ ବଡ଼ ସାନ ।"

ମୋହ ମୁଦ୍‌ଗରରେ ଶଙ୍କରାଚାର୍ଯ୍ୟ ଯେପରି ଉପଦେଶ ଦେଇଛନ୍ତି । "ନଳିନୀ ଦଳଗତ ଜଳମତି ତରଳମ୍, ତଦ୍‌ବତ୍ ଜୀବନମତିଶୟ ଚପଳମ୍" ଠିକ୍ ସେହିପରି ରାଧାନାଥ ଏଥିରେ ବହୁ ଉପଦେଶ ପ୍ରଦାନ କରିଛନ୍ତି । ସେ ଲେଖିଗନ୍ତି—

"ଅଖଣ୍ଡ-ଦଣ୍ଡାୟମାନ-କାଳସିନ୍ଧୁ
ମଧ୍ୟେ ବନ୍ଧୁରହି ନୁହେଁ ଏକବିନ୍ଦୁ ।
ମାଟି-ଘଟେ ବୃଥା ବହି ଅଭିମାନ
ଅଜ୍ଞାନେ ଧରିଛ କର ଶରିଜ୍ଞାନ ।"

ରାଧ ନାଥଙ୍କ ବିଚାରରେ ଭାଗ୍ୟ ହେଉଛି ସବୁଠାରୁ ବଳୀୟାନ୍ । ମନୁଷ୍ୟ ତା' ହାତରେ ଗୋଟିଏ ପେଣ୍ଡୁ । ସମ୍ପଦ ଭାଗ୍ୟ ନିକଟରେ ହେୟ । ସୁଖ ହେଉଛି ଅଳିକ । ଏହା କ୍ଷଣ ଭଙ୍ଗୁର । ଚିଲିକା କାବ୍ୟରେ ରାଧାନାଥ ଏ ପ୍ରସଙ୍ଗରେ ଲେଖିଛନ୍ତି—

"ବସ୍ତୁ ନୁହଁଇ ସେ ଅଟଇଟି ଧୂମ
ଅନ୍ୟନାମ ତାର ଆକାଶ କୁସୁମ ।
ସୁଖବୋଲି ଯାହା ଜନନେତ୍ରେ ଦିଶେ
ହାତୁଁ ଆସେ ହାତେ ଧରିବା ପାଇଁ ସେ ।"

ଏହିଭଳି ସେ ଦରବାର କାବ୍ୟରେ ଲେଖିଛନ୍ତି—

"ସୁଖ ଝଟକେ ଯେ ଚକ୍ଷୁ ଚମକାଇ
ଦୁଃଖ-ବଜ୍ରେ ପରେ କରେ ଧଗ୍‌ଧଗ ଯ୍ୱୀ ।"

ମଣିଷର ଚଟି ହେଉଛି କାଳ ହସ୍ତରେ ବନ୍ଧା । ବେଳେ ବେଳେ ଝିଙ୍କିଦେଲେ ମଣିଷର ଗର୍ବ ଅହଙ୍କାର ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ । ଯେଉଁ ଦେହ ଚନ୍ଦ୍ର ପ୍ରଭାମାଭଳି ସୁନ୍ଦର ଦିଶେ ତାକୁ ଶ୍ୱାନ ଶୃଗାଳ ବାଣ୍ଟି ଖାଆନ୍ତି । ତା' ପାଇଁ ଲୋଡ଼ାହୁଏ ମାତ୍ର ଛଅଖଣ୍ଡ କାଠ । ଭକ୍ତଚରଣ ତେଣୁ ମନବୋଧ ଚଉତିଶାରେ ଲେଖିଛନ୍ତି ।"ଛ'ଖଣ୍ଡ କାଠ ହେବ ତୋ ପାଇଁ ଲୋଡ଼ାରେ ।" ଏହିଭଳି ରାଧାନାଥ ମଧ୍ୟ ଲେଖିଛନ୍ତି—

"ମର୍ତ୍ତ୍ୟେ ପଡ଼ି କାନ୍ଦ ଲୋଡ଼ ଦୁଧ ଯୋଡ଼ା
ଯିବାବେଳେ ଛଅଖଣ୍ଡି କାଠ ଲୋଡ଼ା ।
ମଧ୍ୟେ କେତେଦିନ ମାତର କୁଣିଆ,
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆଁ ।"

କବି ମନୁଷ୍ୟର ଦରବାରକୁ ହେୟ ମନେ କରିଛନ୍ତି । ତାଙ୍କ ବିଚାରରେ କାଳ ଦରବାର ଚିରନ୍ତନ । ସେ ଦରବାରର ବିଚାର ଅବ୍ୟର୍ଥ । ମନୁଷ୍ୟ ଦରବାରର ବିଚାରରେ ଭ୍ରାନ୍ତି ଦେଖାଦିଏ ମାତ୍ର ସେ ଦରବାର ବିଚାରରେ ଭ୍ରାନ୍ତି ଦେଖାଯାଏ ନାହିଁ । ସେ ଦରବାରର ଡାକରାକୁ କେହି ଉପେକ୍ଷା କରି ପାରିବେ ନାହିଁ । ତେଣୁ କବି ଲେଖିଛନ୍ତି—

"ଟଳିବ ନାହିଁ, ବାରେଣ୍ଟ ଯିନା ସେ !
ନ ଦେବେ ମାଗିଲେ ମହଲତ ମାସେ !

ସେ ଦରବାରରେ ଲାଞ୍ଚ ଦେଇ ମିଛ କହି, ପ୍ରତାରଣା କରି କେହି ନିଷ୍କୃତି ଲାଭ କରି ପାରିବେ ନାହିଁ । ଅତେଇ ଦୁନିଆଁ ଯଶ ପାଇଁ ବାଇ ହୋଇ ବୃଥା କାର୍ଯ୍ୟରେ ଲାଗିବାକୁ ଘୃଣା କରିଛନ୍ତି । ଦୁନିଆଁର ସୁଖ୍ୟାତି

ଦୁଇଦିନିଆଁ । ଜନତାର ଯଶ ପାଣି ଫୋଟକା ଭଳି । ଯମ ଦରବାରରେ ଏହି ଯଶ ପଣ୍ଡ ହୋଇ ଯିବ । ଚନ୍ଦ୍ରଗୁପ୍ତଙ୍କର ବିଚାରରେ ସମସ୍ତେ ସମାନ । ଧନୀ ଦରିଦ୍ର, ବଡ଼, ସାନ ସମସ୍ତେ ସମାନ । ସେ ଇଚ୍ଛା କଲେ—

ବସାଇ ଦିଅଇ ରାଜା ପରେ ପ୍ରଜା ।
ବାଗୀଶ ଉପରେ ବସାଏ ବାଳିଶ
ସବାର ଉପରେ ବସାଏ ସଇସ,
ଦୁର୍ବଳକୁ ଦିଏ ବଳୀପରେ ସ୍ଥାନ,
ସୁସ୍ଥଠାରୁ ଦିଏ ରୋଗୀଙ୍କ ସମ୍ମାନ ।

ତେଣୁ ସେ ଉପଦେଶ ଦେଇଛନ୍ତି "ଧର୍ମେ ବଳବାନ କର ନିଜ ଦାବୀ," ମର୍ତ୍ତ୍ୟର ଅଭିମାନକୁ ବଳିଦାନ ଦେଇ ଶାଶ୍ୱତର ଚିନ୍ତାରେ ଉଦ୍‌ବୁଦ୍ଧ ହେବା ଉଚିତ । ତେଣୁ ସେ ସତର୍କ କରି ଲେଖିଛନ୍ତି—

ବଡ଼ ନିଠୁର କାଳ, ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି ।
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା' ପଛେ ଆସି ଲୁଚି ବସେ ।

ତେଣୁ କବି ରାଧାନାଥଙ୍କ ବିଚାରରେ କାଳହିଁ ସତ୍ୟ । ଅନାସକ୍ତ କାଳ ହେଉଛି ମଣିଷର ପ୍ରକୃତ ବିଚାରକ । ମଣିଷର ସକଳ ଅହଙ୍କାର କାଳ ବକ୍ଷରେ କବଳିତ ହୁଏ । ଧର୍ମର ସୁକୃତରୁ ମଣିଷ କାଳଜୟୀ ହୁଏ । ତେଣୁ ଏହି ସଂସାର-ସାଗରକୁ ପାରହେବା ପାଇଁ ଭଗବାନ ଧର୍ମରୂପକ ପୋତ ନିର୍ମାଣ କରିଛନ୍ତି । ଶଙ୍କରାଚାର୍ଯ୍ୟ ମଧ୍ୟ ଏହି ଭଳି 'ଭବତିଭବାର୍ଣ୍ଣବ ତରଣେ ନୌକା' ବୋଲି ଲେଖିଛନ୍ତି । ରାଧାନାଥ ସୁନ୍ଦର ଭାବରେ ଲେଖିଛନ୍ତି—

"ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି,

ଧର୍ମ ଏକା ସିନା ମହତ ପଣିଆ
ଆଉ ବଡ଼ପଣ ଅଟଇ ଦନଆ ।''

ଅତଏବ କବି ଧର୍ମରେ ବିଶ୍ୱାସ କରିଛନ୍ତି ଏହି ଭବାର୍ଣ୍ଣବକୁ ପାରିହେବା ପାଇଁ । ସେ ହେଉଛନ୍ତି ଶାଶ୍ୱତର ପୂଜକ । ତେଣୁ ସେ କ୍ଷଣଭଙ୍ଗୁର ଜାଗତିକ ଭୋଗବିଳାସକୁ ତୁଚ୍ଛମନେ କରିଛନ୍ତି । ତାଙ୍କ ମତରେ କାଳହିଁ ସର୍ବଶକ୍ତିମାନ । ମହାଯାତ୍ରା, ଚିଲିକା, ଆଦିକାବ୍ୟରେ ଏହାର ବହୁ ଦୃଷ୍ଟାନ୍ତ ରହିଛି । ମୋଟ ଉପରେ ଜଗତ ଓ ଜୀବନ ପ୍ରତି କବି ରାଧାନାଥଙ୍କର ଦାର୍ଶନିକ ଦୃଷ୍ଟିକୋଣ ଜୀବନ୍ତ ଭାବରେ ଦରବାର କାବ୍ୟରେ ପ୍ରକଟିତ ହୋଇଛି ।

---

୫—ବର୍ଣ୍ଣିତ କାବ୍ୟାନୁଯାୟୀ ଦରବାରର ଶୋଭା ବର୍ଣ୍ଣନା କରି ଆଗନ୍ତୁକ ଅତିଥିମାନଙ୍କର ପରିଚୟ ରାଧାନାଥ କିପରି ଭାବରେ ପ୍ରଦାନ କରିଛନ୍ତି ଆଲୋଚନା କର ।

ଇତିହାସ ପ୍ରସିଦ୍ଧ ବାରବାଟୀ ଗଡ଼ର ଜୀର୍ଣ୍ଣଶୀର୍ଣ୍ଣ ପରିବେଶ ମଧ୍ୟରେ ସାମନ୍ତଚନ୍ଦ୍ରଶେଖର, ଓ ଗୋବିନ୍ଦବଲ୍ଲଭ ରାୟଙ୍କୁ ଯଥାକ୍ରମେ ମହାମହୋପାଧ୍ୟାୟ ଏବଂ ରାୟବାହାଦୂର ଉପାଧିରେ ସମ୍ମାନିତ କରିବା ପାଇଁ ତତ୍‌କାଳୀନ ଇଂରେଜ ସରକାରଙ୍କ ତରଫରୁ ଏକ ମନୋହର ଦରବାର ସଜ୍ଜିତ ହୋଇଥିଲା । ମନେହେଉଥିଲା ସତେଯେପରି ସେହି ଜୀର୍ଣ୍ଣ ଗଡ଼ ପୁଣି ଥରେ କୋଳାହଳମୟ ହୋଇ ଉଠିଛି । ସୁନ୍ଦର ଚନ୍ଦ୍ରାତପ ତଳେ ସଭାମଞ୍ଚ ସୁରୁଚିରୂପେ ନିର୍ମିତ ହୋଇଥିଲା । ବିଭିନ୍ନ ବ୍ୟକ୍ତିମାନଙ୍କ ପାଇଁ ଭିନ୍ନ ଭିନ୍ନ ସ୍ଥାନ ନିରୂପିତ ହୋଇଥିଲା । ଏହି ଦରବାରକୁ କେତେକ ରାଜା ଓ ଜମିଦାରମାନେ ନିମନ୍ତ୍ରିତ ହୋଇଥିଲେ । ସେମାନେ ଯେପରି ଭାବରେ ଆଡ଼ମ୍ବର ସହକାରେ ସଭାସ୍ଥଳକୁ ଆସୁଥିଲେ କବି ତାହାକୁ କଠୋର ଭାବରେ ବ୍ୟଙ୍ଗୋକ୍ତି କରି ଲେଖିଅଛନ୍ତି । ରାଜା ମହାରାଜାମାନେ ନାନାରଙ୍ଗରେ ବାଦ୍ୟ ନାଦକରି, ପତକା ଉଡ଼ାଇ, ଆସୁଥାନ୍ତି । ପାଇକମାନଙ୍କର କୁହାଟରେ ଭୟ ସୃଷ୍ଟି ହେଉଥାଏ । ଅଶ୍ୱ

ଓ ହସ୍ତୀମାନେ ମଧ୍ୟ ଅସୁଥାନ୍ତି । ଗୁଡ଼ୁମ୍ ଗୁଡ଼ୁମ୍ ହୋଇ ତୋପ ଧ୍ୱନି ହେଉଥାଏ । କବି ରାଧାନାଥ ଦରବାର ସ୍ଥଳର ମଞ୍ଚର ସୁନ୍ଦର ବର୍ଣ୍ଣନା କରି ଲେଖିଛନ୍ତି ।

" ଚନ୍ଦ୍ରାତପ ତଳେ ବିରାଜଇ ମଞ୍ଚ
ମହାର୍ହ ବସନ-ଭୂଷଣେ ସୁସଞ୍ଚ,
ରତ୍ନାବଳୀ ପଙ୍କେ ହୋଇଛି ମଣ୍ଡନ
ଅଗ୍ରେ ଧାଡ଼ି ଧାଡ଼ି ରାଜେ ବେଦାସନ ।"

ରାଜାମାନେ ଏହି ସଭାକୁ ନବ ବସ୍ତ୍ର ପରିଧାନ କରି ଆସୁଥାନ୍ତି । ହସ୍ତରେ ସେମାନଙ୍କର ଶୋଭା ପାଉଥାଏ କଳଙ୍କିଲଗା କୃପାଣ ଏବଂ ଦେହରେ ମୋତିମାଳା ପରିବେଷ୍ଟିତ ପୋଷାକ । ଅନ୍ତଃସାରଶୂନ୍ୟ ପଦବୀ ଲାଭ କରିବା ପାଇଁ ସେମାନଙ୍କ ମଧ୍ୟରେ ହେଉଥିବା ପ୍ରତିଯୋଗିତାକୁ ସେ କଠୋର ସମାଲୋଚନା କରିଛନ୍ତି । ମଞ୍ଚ ପାଶରେ କେତେକ ଲୋକ ଦଣ୍ଡାୟମାନହୋଇ ଯଥୋଚିତ ଆସନ ଲାଭ କରି ନଥିବାରୁ କଳହ କରୁଥାନ୍ତି । କବି ସେମାନଙ୍କୁ ଉଦ୍ଦେଶ କରି ଲେଖିଛନ୍ତି—

" ମଞ୍ଚ ପାଶେ କପାଁ ଏତେ ଲୋକଠିଆ ?
ଲାଗିଅଛି ପରା ଆସନ କଜିଆ !
ନିଜ ଅହମିକା-ସଦୃଶ ଆସନ
ନ ଦେଖି ଯୋକାଏ ମହା କ୍ଷୁର୍ଣ୍ଣମନ । "

ବାଳକମାନେ କ୍ରୀଡ଼ା ସମୟରେ ଯେପରି କଳହ କରନ୍ତି ସେହିଭଳି ସେମାନେ ଆସନ ପାଇଁ କଳହ କରୁଥାନ୍ତି । କିଏ କହୁଥାଏ " ମୁହିଁ ଉଚ୍ଚ-ପଦଧାରୀ " ତେଣୁ " ଉଚ୍ଚ ଆସନରେ ମୁହିଁ ଅଧିକାରୀ " । ପୁଣି କିଏ କହୁଥାଏ ଯେ " ମୁହିଁ ଉଚ୍ଚ ବଂଶଧର " । ତେଣୁ ସେ ଆପତ୍ତି କରୁଥାଏ "ମୋର ଏ ଆସନ କପାଁ ହେଲା ତଳେ ? " କେହି କହେ ଯେ ସେ ପାଇକ ଶ୍ରେଷ୍ଠ । ତାକୁ ସଂଗ୍ରାମରେ ରାଣୀ ପଦକ ଦେଇଛନ୍ତି । ତେଣୁ ତାର ଆସନ

ଢଙ୍ଗରେ ହେବା ଉଚିତ । ପୁଣି ପୋଲିସ୍ କର୍ମଚାରୀ ନିଜର ବାହାଦୁରୀ ଦେଖାଇ କହୁଥିବାର ଶୁଣାଯାଉଥାଏ "ମୁଁ ହେଉଛି ପୋଲିସ୍ । ମୁଁ ବିନା ମେଘରେ କୁଳିଶ ସୃଷ୍ଟି କରିପାରେ । ଦୋଷୀ, ନିର୍ଦ୍ଦୋଷ; ଦୁଃଖୀରଙ୍କା ସମସ୍ତେ ତାର ପ୍ରତାପରେ ଥରହର ।" ତେଣୁ ସେ କହେ "ମୋଠାରୁ କିଏ ବଡ଼ ଦରବାରେ ?" ଏପରିକି ଗୋରା ହାକିମ ଓ ଡେପୋଟିମାନେ ମଧ୍ୟ ନିଜ ନିଜର ଆସନ ପାଇଁ କଳହ କରୁଥାନ୍ତି । ସମ୍ପାଦକଙ୍କର ଗୃହିଣୀ ମଧ୍ୟ ନିଜର ଆସନ ପାଇଁ ବ୍ୟସ୍ତ ହେଉଥାଏ । ସର୍ବତ୍ର ଅହମିକାର ପ୍ରତିଯୋଗିତା ଚାଲିଥାଏ । କବି ଏହି ଭାବକୁ ଲକ୍ଷ୍ୟକରି କଠୋର ବ୍ୟଙ୍ଗ କରିଅଛନ୍ତି । କେହି ସାହେବୀ ପୋଷାକ ପିନ୍ଧି, ସାହେବୀଠାଣିରେ କଥା କହି, ରୁମାଲରେ ମୁଖ ପୋଛୁଥାଏ । ସମୟ ଜାଣିବା ପାଇଁ ମିଛରେ ଘଡ଼ିକୁ କାଢ଼ି ଦେଖୁଥାଏ କେହି ନାନାଦି ଅଳଙ୍କାରମାନ ପରିଧାନ କରି ଗର୍ବକରୁଥାନ୍ତି । ତେଣୁ କବି ଯଥାର୍ଥରେ ଲେଖିଛନ୍ତି—

କେତେ ରଙ୍ଗ କରୁଥାନ୍ତି କେତେଜଣ
କହିଲେ ନସରେ ନର-ଫୁଲପଣ ।"

କବି ରାଧାନାଥ ମଞ୍ଜସ୍ଥଳୀର ଶୋଭା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଅତୀତ ଉତ୍କଳର ଗୌରବର ପ୍ରତୀକ ବାରବାଟୀଗଡ଼ର ଗୌରବୋଦ୍ଦୀପ୍ତ ଐତିହ୍ୟକୁ ତୁଳନାତ୍ମକ ଭାବରେ ବର୍ଣ୍ଣନା କରିଛନ୍ତି । ଅହମିକାଗ୍ରସ୍ତ ରାଜାମାନଙ୍କର ବାଦ୍ୟନାଦ ଅତୀତ ଉତ୍କଳର ବୀରମାନଙ୍କର ରଣଦୁନ୍ଦୁଭିଠାରୁ ଉପରି ହେଉଛି ସେ ସନ୍ଦର୍ଭରେ ମଧ୍ୟ ଆଲୋଚନା କରିଛନ୍ତି । ରାଜା, ଜମିଦାର, ପୋଲିସ୍ କର୍ମଚାରୀ, ଡେପୋଟି, ଇତ୍ୟାଦି ଉପରି ନିଜ ନିଜର ଆସନ ପାଇଁ କଳହରତ ଥିଲେ ସେ ସନ୍ଦର୍ଭରେ କବି ବ୍ୟଙ୍ଗାତ୍ମକ ଦୃଷ୍ଟି କୋଣରୁ ବର୍ଣ୍ଣନା କରିଛନ୍ତି ।

———

୬—ଦରବାର କାବ୍ୟରେ ରାଧାନାଥ ଜୀବନର ଅସାରତା ସମ୍ବନ୍ଧରେ ଯାହା ବର୍ଣ୍ଣନା କରିଛନ୍ତି ଆଲୋଚନା କର ।

'ଦରବାର' କବିବର ରାଧାନାଥରାୟଙ୍କ କବି ପ୍ରତିଭାର ଏକବ୍ୟତିକ୍ରମ । ସେ ଏହି କାବ୍ୟରେ ତତ୍‌କାଳୀନ ସାମାଜିକ ତଥା ରାଜନୀତିକ ସମସ୍ୟାକୁ ସଂସ୍କାର କରିବା ସଙ୍ଗେ ସଙ୍ଗେ ଜୀବନର ଅସାରତାକୁ ମଧ୍ୟ ବର୍ଣ୍ଣନା କରି ଅଛନ୍ତି । ସେ ଥିଲେ ଦୁଃଖବାଦୀ କବି । ତେଣୁ ତାଙ୍କର ପ୍ରତ୍ୟେକ କାବ୍ୟରେ ଦୁଃଖଦ ଜୀବନର ଅଶ୍ରୁଳ କାହାଣୀ ବର୍ଣ୍ଣିତ ହୋଇଅଛି । ଭାଗ୍ୟ ଓ ଭଗବାନ ଉପରେ ଅସୀମ ବିଶ୍ୱାସ ରଖି କ୍ଷଣଭଙ୍ଗୁର ଜୀବନର ଅସାରତାକୁ ଦର୍ଶାଇ ଅଛନ୍ତି । ଚିଲିକା କାବ୍ୟରେ କବି ଜୀବନର ଅସାରତାକୁ ମଧ୍ୟ ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି । ଶଙ୍କର ଋଷିଙ୍କ ଭଳି ସେ ଜୀବନର ଅନିଶ୍ଚିତତାକୁ ଦରବାର କାବ୍ୟରେ ଉଲେଖ କରି ଅଛନ୍ତି । ଯେଉଁ ଭବ-ସାଗରରେ ଜୀବନ ହେଉଛି ଜଳର ବୁଦ୍‌ବୁଦ ଭଳି ସେଠି ଅହମିକାର ଆସ୍ଫାଳନ କରିବା, ଉପାଧି ଲାଗି ପ୍ରତିଯୋଗିତା କରିବା ନିତାନ୍ତ ହାସ୍ୟାସ୍ପଦ । କବି ଏଥିପାଇଁ ଏ କାବ୍ୟରେ ଉପାଧିଲାଳସୀ ବ୍ୟକ୍ତିମାନଙ୍କୁ ଚେତାବନୀ ଶୁଣାଇଚନ୍ତି । ସେ ଲେଖିଛନ୍ତି:

"ଅଳ୍ପଦିନ ସ୍ଥିତିପାଇଁ ଭବେଚଟି
ଏଥିଲାଗି କାହିଁ ଏତେ କଟାକଟି ?
ମଣସିନା ଆପଣାକୁ ବଡ଼କରି
ମାନକଥା—ବୃଥାଦେହେ ମଣାପରି ।

ଏ ଜଗତ ହେଉଛି ଗୋଟିଏ ରଙ୍ଗ ମଞ୍ଚ । ଏଠି ସମସ୍ତେ ଜଣେ ଜଣେ ଅଭିନେତା ଓ ଅଭିନେତ୍ରୀ । ଅଭିନୟ ସରିଗଲେ ପରେ ପରେ ସମସ୍ତେ ଏ ରଙ୍ଗ ମଞ୍ଚରୁ ବିଦାୟ ନେଇ ଯିବେ । ସେକ୍‌ସପିୟର ଯେପରି ଲେଖିଛନ୍ତି "This world is a stage" ସେହିପରି ରାଧାନାଥ ଲେଖିଛନ୍ତି—

"ଜଣେ ଜଣେ ଗୋଟି ଗୋଟିଏ ସୁଆଙ୍ଗ
ଗ୍ଭଲି ଯିବ ଭବ ଲୀଳାହେଲେ ସାଙ୍ଗ
ସର୍ବେଯିବଖାଇ ଉଭେଇ ଅଚିରେ,
ବୁଦ୍‌ବୁଦ ପରାୟେ ଏହି ନଦୀ-ନୀରେ ।"

*

ଏ ଜୀବନ ହେଉଛି ଶଙ୍କରା ଗ୍ରୁଙ୍କ ଭାଷାରେ "ନଳିନୀ ଦଳଗତ ଜଳମତି ତରଳମ୍" । ମାଟିର ଘଟ ମାଟିରେ ମିଶି ଯିବ । ଏଠି ସୁଖ ହେଉଛି ଅନିତ୍ୟ । "ସୁଖବୋଲି ଯାହା ଜନନେଜେ ଦଶେ, ହାତେ ଆସେ ହାତେ ପଡ଼ିବା ପାଇଁ ସେ ।" ଦୁଃଖ ହେଉଛି ବଜ୍ରଭଳି । ମଣିଷର ସୁଖକୁ ସେ ସହଜରେ ଭୂତଳଶାୟୀ କରିଦିଏ । ମଣିଷ ନିଜକୁ ବଡ଼ବୋଲି ମନେ କରେ । ସମସ୍ତଙ୍କ ଉପରେ ପ୍ରଭୁବୋଲି ଭାବେ । ମାତ୍ର କାଳ ମଣିଷକୁ ଆସ୍ତୃଡ଼ କରେ । ମଣିଷ ଭୁଲିଯାଏ "ନିଜ ଭାଗ୍ୟ ଡୋରି କାଳ ହସ୍ତେ ବନ୍ଧା ପକାନ୍ତି ହେଲେ ପାଶୋରି ।" ଦରବାର କାବ୍ୟରେ ତେଣୁ ରାଧ ନାଥ ଲେଖିଛନ୍ତି—

"ବେଗବଗ୍ୟାଜେ କାଳ ଅରେ ଅରେ ଚୁଟି
ଝିଙ୍କି ଦେଲେ ଏହି ଦର୍ପ ଯାଏ ଭୁଟି ।"

ମଣିଷ ଜୀବିତାବସ୍ଥାରେ ଧରାକୁ ଶରା ବୋଲି ଜ୍ଞାନ କରେ । ସେ ଚିନ୍ତା କରେ ସେ ହେଉଛି ମହାନ । ମାତ୍ର ଯେତେବେଳେ ସେ ମରିଯାଏ ତ କୁ କେହି ପଗ୍ଭରନ୍ତି ନାହିଁ । ତାର ଚିତ୍ର ପ୍ରତିମା ଦେହକୁ କେହି ଛୁଅନ୍ତି ନାହିଁ । ସେ ହୁଏ ମଡ଼ା । ତା' ଦେହରୁ ଝାଳ ଦୁର୍ଗନ୍ଧ ବାହାରେ । ତାକୁ ପୁଣି ଶ୍ୱାନ ଶୃଗାଳ ବାଣ୍ଟି ଖାଆନ୍ତି । ମନବୋଧ ଚଉତିଶା'ରେ କବି ଭକ୍ତଚରଣ ଏକଥା ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । କବି ରାଧାନାଥ ମଧ୍ୟ ଏକଥାକୁ ବିଶ୍ଳେଷଣ କରି ଲେଖିଛନ୍ତି—

"ମର୍ତ୍ତ୍ୟେ ପଡ଼ି କାନ୍ଦି ଲେଡ଼ ଦୁଧ ଯୋଡ଼ା
ଯିବାବେଳେ ଛୁଅଖଣ୍ଡି କାଠ ଲୋଡ଼ା,
ମଧ୍ୟେ କେତେଦିନ ମାତର କୁଣିଆ
ଏଥିପାଇଁ ପୁଣି ନଅଣ୍ଟେ ଦୁନିଆ ।"

କାଳର ଡାକରାରେ ମଣିଷ ନିଶ୍ଚୟ ଦିନେ ଏ ଜଗତରୁ ବିଦାୟ ନେଇ ଯିବ । ସେତେବେଳେ ସମସ୍ତେ ପଛରେ ପଡ଼ି ରହିବେ । ଧନ ଦ୍ରବ୍ୟ କିଛି ସାଥିରେ ଯିବ ନାହିଁ । ସ୍ତ୍ରୀ, ପୁତ୍ର ମଧ୍ୟ ପଗ୍ଭରିବେ ନାହିଁ । ମଣିଷର କେବଳ ଅହମିକାର ଅବସାନ ଘଟିବ । ଏଥିପାଇଁ ରାଧାନାଥ ଯଥାର୍ଥରେ

ଲେଖିଛନ୍ତି "ସାରମଣ କଣ୍ଠା ଅସାର ଧନକୁ ?" ପ୍ରତ୍ୟେକ ମଣିଷ ନଶ୍ବର ମୃତ୍ୟୁର ଶୀତଳ ହସ୍ତ ସ୍ପର୍ଶ ଲାଭ କରିବେ । ଏଥିପାଇଁ Mac Flecknoe ଯଥାର୍ଥରେ ଲେଖିଅଛନ୍ତି;—

All human things are subject to decay
And when fate summons, monarchs
must obey".

କାଳର ଡାକରାକୁ କେହି ଉପେକ୍ଷା କରି ନ ପାରେ । କାଳର ସମନ ଆସିଲେ ସମସ୍ତେ ଯିବାକୁ ବାଧ୍ୟ । ରଜା, ପ୍ରଜା, ଧନୀ, ଦରିଦ୍ର, ଉଚ୍ଚ ' ନୀଚ ସମସ୍ତେ କାଳର ଅଧୀନ । କାଳର ଆହ୍ବାନକୁ ସମସ୍ତେ ମାନିବାକୁ ବାଧ୍ୟ । ରାଧାନାଥ ଦରବାର କାବ୍ୟରେ ଏ ବିଷୟ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ।ସେ ପୁଣି ବର୍ଣ୍ଣନା କରିଛନ୍ତି ଯେ ଭାଗ୍ୟହିଁ ବଡ଼ । ସେ ଇଚ୍ଛା କଲେ ମଣିଷକୁ ଧନୀ କରି ପାରେ ଏବଂ ଦରିଦ୍ର କରିପାରେ । ସେ ରଜା ଉପରେ ପ୍ରଜାକୁ, ସବଳ ଉପରେ ଦୁର୍ବଳକୁ, ବାବୁ ଉପରେ ବେହେରାକୁ ବସାଇ ଦିଏ । ଏଠି କେବଳ ଏକ ମାତ୍ର ସତ୍ୟ ହେଉଛି ଧର୍ମ । ପାର୍ଥିବ ଭୋଗ ବିଳାସ ଅନିତ୍ୟ ଜୀବନ କ୍ଷଣ ଭଙ୍ଗୁର । ଏହି ସଂସାର-ସାଗରକୁ ଅତିକ୍ରମ କରିବା ପାଇଁ ଏକମାତ୍ର ଧର୍ମପୋତ ଆବଶ୍ୟକ । କବି ତେଣୁ ଯଥାର୍ଥରେ ଲେଖିଛନ୍ତି;—

'ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି ।
ଧର୍ମ ଏକା ଯିନା ମହୀତ ପଣିଆ
ଆଉ ବଡ଼ପଣ ଅଟେ ଲୁଣିଆ ।"

କବି ରାଧାନାଥ ଦରବାର କାବ୍ୟରେ ଜୀବନର ଅସାରତାକୁ ଯଥାର୍ଥ ଭାବରେ ବର୍ଣ୍ଣନା କରିଛନ୍ତି ଏବଂ ଏହି ଅସାର ଜୀବନରୁ ମୁକ୍ତି ଲାଭ ପାଇଁ ଧର୍ମର ଆଶ୍ରୟ ନେବାକୁ ଉପଦେଶ ପ୍ରଦାନ କରିଛନ୍ତି ।

———

୭—କବି ରାଧାନାଥ ଦରବାର କାବ୍ୟରେ କାଳକୁ କିପରି ସର୍ବଶକ୍ତିମାନ ଭାବରେ ବର୍ଣ୍ଣନା କରିଛନ୍ତି ଆଲୋଚନା କର ।

"Time is the distroyer. Time preserver"—ବାସ୍ତବିକ୍ କାଳହିଁ ଧ୍ୱଂସକର୍ତ୍ତା ଏବଂ କାଳହିଁ ରକ୍ଷାକର୍ତ୍ତା । କାଳ ଅନାସକ୍ତ । କାଳ ନିର୍ଲିପ୍ତ । ମନୁଷ୍ୟର ସକଳ ଦମ୍ଭ ଅହଙ୍କାର କାଳ ଦରବାରରେ ପର୍ଯ୍ୟବସିତ ହୁଏ । ମନୁଷ୍ୟ ନିଶ୍ଚିହ୍ନ ହୋଇଯାଏ କାଳ ବକ୍ଷରେ । କାଳ ସମସ୍ତଙ୍କୁ କବଳିତ କରେ । ମାତ୍ର ସତ୍କର୍ମ ଓ କୀର୍ତ୍ତି ସମୟର ରଥଚକ୍ର ତଳେ ନିଷ୍ପେଷିତ ହୁଏ ନାହିଁ । ସମୟର କାଳବକ୍ଷ ପରେ ଯଶସ୍ୱୀ ବ୍ୟକ୍ତିର ପଦଚିହ୍ନ ଚିର ଭାସ୍ୱର ହୋଇ ଉଠେ । ସେ ହୁଏ କାଳକୋଳରେ ଚିରଂଜୀବୀ । କବି ରାଧାନାଥ ଏହି କଥାକୁ ବାସ୍ତବ ଭାବରେ ଦରବାର କାବ୍ୟରେ ବର୍ଣ୍ଣନା କରିଛନ୍ତି । ମହାଯାତ୍ରା'ରେ ମଧ୍ୟ ସେ ଲେଖିଛନ୍ତି କାଳ "ତାଳକ କଳିତ ବୃନ୍ଦେ ପଶେ ଅବାରିତେ ।" ଚିଲିକାରେ ମଧ୍ୟ ଏହି କଥାକୁ ସେ ଉଲ୍ଲେଖ କରିଛନ୍ତି । ଦାମ୍ଭିକ ବ୍ୟକ୍ତି ସମସ୍ତଙ୍କ ଭାଗ୍ୟଡୋରକୁ ହସ୍ତରେ ରଖିବା ପାଇଁ ଇଚ୍ଛା କରେ ମାତ୍ର "ନିଜ ଭାଗ୍ୟ ଡୋରି କାଳ ହସ୍ତେ ବନ୍ଧା ପକାନ୍ତି ହେଲେ ପାସୋରି ।" ଏ ପ୍ରସଙ୍ଗରେ ଦରବାର କାବ୍ୟରେ କବି ତେଣୁ ବର୍ଣ୍ଣନା କରିଛନ୍ତି ।

" ବଡ଼ନିଠୁର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଦିଏ ସେ ଆଚମ୍ବିତେ ଆସି ।
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ନିଚବସେ ।"

ତେଣୁ ଯେଉଁ ବ୍ୟକ୍ତି ଅହମିକାର ବଡ଼େଇ କରେ, ଧରାକୁ ଶରା ବୋଲି ଜ୍ଞାନ କରେ ସେ କାଳଦ୍ୱାରା ନିମିଷକେ କବଳିତ ହୁଏ । ମଣିଷ ଗର୍ବ କରେ ତାର ଶକ୍ତିର, ସାମର୍ଥ୍ୟର । ଅହଂକାର ପ୍ରକାଶ କରେ ତାର ପାର୍ଥିବ ଭୋଗ ବିଳାସ ପାଇଁ । ମୂର୍ତ୍ତିର ଆସ୍ଫାଳନ କରେ ତାର ଯୌବନ ପାଇଁ, ତାର ଦୈହିକ ସୌନ୍ଦର୍ଯ୍ୟ ପାଇଁ, ତାର ପଦପଦବୀ ପାଇଁ । ମାତ୍ର ଅନାସକ୍ତ କାଳ ନିକଟରେ ସେ ତୁଚ୍ଛ । ତାର ମାଟିର ଘଟ ମାଟିରେ ମିଶିଯାଏ । ତା'ପାଇଁ

ଲେଡ଼ାହୁଏ ମାତ୍ର ଛଅଖଣ୍ଡ କାଠ । ତେଣୁ କବି ରାଧାନାଥ ଯଥାର୍ଥରେ ଭକ୍ତଚରଣଙ୍କ ପରି ଲେଖିଛନ୍ତି—

"ଯିବାବେଳ ଛଅଖଣ୍ଡି କାଠ ଲେଢ଼ା "

ମଣିଷ ଗର୍ବ କରେ ତାର ଧନର, ତାର ମାନର, ତାର ଅହମିକାର । ମାତ୍ର କାଳ ଏକଥାକୁ ବିଚାରକୁ ନିଏ ନାହିଁ ।

"ବେଗ ବ୍ୟାଜେ କାଳ ଥରେ ଥରେ ଚୁଟି
ଝିଙ୍କିଦେଲେ, ଏହି ଦର୍ପଯାଏ ତୁଟି ।

କାଳ ନିକଟରେ ମଣିଷ କିଂକର୍ତ୍ତବ୍ୟ ବିମୂଢ଼ । ଜଳର ବୁଦ୍‌ବୁଦ ଭଳି ସମସ୍ତେ ଦିନେ କାଳ ସ୍ରୋତରେ ଉଭେଇ ଯିବେ । କାଳର ଡାକରାକୁ କେହିହି ଅବହେଳା କରି ନ ପାରେ । ପ୍ରେତପତି ନିଜେ କାଳଦଣ୍ଡ ହସ୍ତରେ ଧାରଣ କରି ସର୍ବପତିରୂପେ ବୈଶ୍ୱାନର ଦରବାରରେ ବିଜେ କରିଅଛନ୍ତି । ସେ ଦରବାରରେ ମନ୍ତ୍ରୀମାନଙ୍କର ପଦପଦବୀ ବିଚାରକୁ ନିଆଯାଏ ନାହିଁ । ସେଠି ଲାଞ୍ଚ ମିଛ ଚଳେ ନାହିଁ । ଯମ-ଦରବାରରେ ମଣିଷର ସମସ୍ତ ବଡ଼େଇ ପଣ୍ଡ ହୁଏ । ସେ କାଳ ବଡ଼ ଅନାସକ୍ତ । ତାର ଚକ୍ଷୁ ଲଜ୍ଜା ନାହିଁ । କବି ତେଣୁ ଲେଖିଛନ୍ତି—

"ସେ ନ ମାନେ ତୋର ମୃଦୁହାସ ଛଟା
ସେ ନ ଜାଣେ ପାନ ଅଧରର ବଟା,
ସେ ଗଣିବ ନାହିଁ ତୋର ସୁନାଘଡ଼ି
ଗଣିବ ନାହିଁ ତୋ ସାଲର ପଗଡ଼ି ।"

ସେ କାଳ ପୁଣି ଅଦ୍ଭୁତ । ଅଦ୍ଭୁତ ତାର କାର୍ଯ୍ୟମତି । ବିଚିତ୍ର ପୁଣି ତାର ବିଚାର । ସେ—

\+ \+ \+

"ବସାଇ ଦିଅଇ ରାଜାପରେ ପ୍ରଜା,
ବାଗୀଶ ଉପରେ ବସାଏ ବାଳିଶ
ସବାର ଉପରେ ବସାଏ ସଇସ,
ଦୁର୍ବଳକୁ ଦିଏ ବଳୀପରେ ସ୍ଥାନ
ମୂର୍ଖଠାରୁ ଦିଏ ରୋଗୀକି ସମ୍ମାନ "

ସେ କାଳ ଫେସନ ଚେଞ୍ଜେଷ୍ଟ ମାନେ ନାହିଁ । ବାଲ୍ମୁ ଉପରେ ବେଙ୍ଗେଷ୍ଟଙ୍କୁ, ସିଂହ ଉପରେ ଶଶକୁ, ଭୂସ୍ୱାମୀ ଉପରେ ରକ୍ତଳଙ୍କୁ, ଶ୍ରେଷ୍ଠ ବର୍ଣ୍ଣ ଉପରେ ଚଣ୍ଡାଳଙ୍କୁ, ଉଚ୍ଚମନ୍ତ୍ରୀ ଉପରେ ଖାତକଙ୍କୁ ସେ ବସାଇ ଦଏ । ତାକୁ କେହି ଭଣ୍ଡି ପାରିବେ ନାହିଁ ତେଣୁ—

"ଭଣ୍ଡିବାର ତାକୁ ନୁହଇ ସହଜ
ନଖାର ନଖାର ଦେଖେ ସେ କାଗଜ ।

କବିରାଧାନାଥ ଦରବାର କାବ୍ୟରେ ଏହିପରି କାଳର ସାର୍ବଭୌମ କ୍ଷମତାକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ବିଚାରରେ କାଳ ହେଉଛି ସର୍ବଶକ୍ତିମାନ । ଲୌକିକ ଜଗତର ସକଳ ବସ୍ତୁ କ୍ଷଣିକ ।

———

୮ । ରାଧାନାଥ ଯେଉଁ ଯମଦରବାର କଥା ବର୍ଣ୍ଣନା କରିଛନ୍ତି ଆଲୋଚନା କର ।

(୭ ନମ୍ବର ପ୍ରଶ୍ନର ଉତ୍ତର ଦେଖ)

## ସରଳାର୍ଥ

(କ) ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଆଜ
ନବ୍ୟ ଉତ୍କଳର ଏ ମଭ୍ୟ ସମାଜ,
ପୂର୍ବ ନରପତି ପ୍ରେତ-ଆତ୍ମମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ ।

ଉଦ୍ଧୃତ ପଦ୍ୟାଂଶଟି କବିବର ରାଧାନାଥରାୟଙ୍କ ଦ୍ୱାରା ରଚିତ 'ଦରବାର' କାବ୍ୟରୁ ଉଦ୍ଧୃତ ହୋଇଅଛି । ଅତୀତ ଉତ୍କଳର ଭାଗ୍ୟରବି ଅସ୍ତମିତ ପରେ ଉତ୍କଳର ଯେଉଁ ଅଧଃପତନ ହୋଇଥିଲା ତାକୁ ଲକ୍ଷ୍ୟ କରି କବି ଇତିହାସ ପ୍ରସିଦ୍ଧ ଜରାଜର୍ଜର ବାରବାଟୀ ଦୁର୍ଗ ମାଧ୍ୟମରେ ପ୍ରକାଶ କରିଛନ୍ତି—

କୀର୍ତ୍ତି କଲାଟିକା ଦୁର୍ଗମାଳିକା ଉତ୍କଳର ଗୌରବ ଓ ବୀରତ୍ୱର ପ୍ରତୀକ ବାରବାଟୀ ଦୁର୍ଗ ବିରାଜମାନ ଥିଲା । ଅରାତିପ୍ରମାଥୀ ନରପତିମାନେ ଏହି ଦୁର୍ଗରେ ବାସ କରୁଥିଲେ । ଶତ୍ରୁମର୍ଦ୍ଦନକାରୀ ସୈନିକମାନଙ୍କର ଏହାଥିଲା ଲୀଳାଭୂମି । ମାତ୍ର କାଳର କବଳରେ ଏସବୁ ଲୀନ ହୋଇଗଲା,

ନଭଶ୍ଚୁମ୍ବୀ ବାରବାଟୀ ଦୁର୍ଗ ହେଲା ଭୂଲୁଣ୍ଠିତ । ସେହି ଜରାଜର୍ଜର ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଗୋଟିଏ ଦରବାର ବସିଥିଲା ସାମନ୍ତଚନ୍ଦ୍ର-ଶେଖର ଓ ଗୋବିନ୍ଦବଲଭଦ୍ରଙ୍କୁ ସମ୍ମାନିତ କରିବା ପାଇଁ । କବି ଉଲ୍ଲେଖ କରିଛନ୍ତି ଯେ ଯେଉଁ ଦୁର୍ଗର ପ୍ରାଚୀର କାଞ୍ଚିଅଭିଯାନ ସମୟରେ ଶଙ୍ଖ ଦୁନ୍ଦୁଭିକମ୍ପନକାରୀ ବାଦ୍ୟନାଦରେ ପ୍ରତିଧ୍ୱନିତ ହୋଇ ଉଠିଥିଲା ଆଜି ସେଠି ଅଭିମିକାର ପରିଚର୍ଯ୍ୟା ପାଇ ପ୍ରତିଯୋଗିତା ଚାଲିଛି । ନବ ଉତ୍କଳର ଏହି ସଭ୍ୟସମାଜକୁ ସତେ ଯେପରି ବାରବାଟୀ ତାର ଜରାଜୀର୍ଣ୍ଣ ବେଶରେ ମିୟମାଣ ହୋଇ ଦେଖୁଅଛି । କେବଳ ଏତିକି ନୁହେଁ, ଅତୀତ ଉତ୍କଳର ବୀର ବରେଣ୍ୟ ନରପତିମାନଙ୍କର ପ୍ରେତାତ୍ମାମାନେ ଶୂନ୍ୟ ମଣ୍ଡଳରେ ଅଧିଷ୍ଠିତହୋଇ ଏମାନଙ୍କୁ ଦେଖୁଅଛନ୍ତି । କବି ଏପ୍ରସଙ୍ଗରେ ଅତୀତ ଉତ୍କଳର ଗୌରବ ଗାରିମା ସହିତ ତତ୍କାଳୀନ ଅବସ୍ଥାକୁ ତୁଳନାତ୍ମକ ଭାବରେ ବର୍ଣ୍ଣନା କରି ସଭ୍ୟ ଶିକ୍ଷିତ ଉତ୍କଳୀୟମାନଙ୍କୁ ବ୍ୟଙ୍ଗୋକ୍ତି ପ୍ରକାଶ କରିଛନ୍ତି ।

---

(ଖ) ଉପାଧି-ଜଡ଼ିତେ ଉପାଧି-ଜଡ଼ିତ
ଉପାଧିରେ ଆଜି କରିବେ ଜଡ଼ିତ,
ପଦଟିଏ ଦେବେ କର୍ଣ୍ଣ ରସାୟନ
ପଦ ଅନୁରୂପେ ବସନ ଭୂଷଣ ।

ଉକ୍ତ ପଦ୍ୟାଂଶଟି 'ଦରବାର' କାବ୍ୟରୁ ଆନୀତ । କବିବର ରାଧାନାଥ ରାୟ ଏ ପ୍ରସଙ୍ଗରେ ଉପାଧିଲାଳସୀ ବ୍ୟକ୍ତିମାନଙ୍କୁ ବ୍ୟଙ୍ଗୋକ୍ତି ପ୍ରକାଶ କରି ଲେଖିଛନ୍ତି—

ବାରବାଟୀ ଗଡ଼ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିବା ଦରବାରରେ କେତେକ ସମ୍ମାନୀୟ ବ୍ୟକ୍ତିଙ୍କୁ ଉପାଧି ପ୍ରଦାନ କରାଯାଇଥିଲା । ଉପାଧିପ୍ରାପ୍ତ ବ୍ୟକ୍ତିଙ୍କୁ ଉପାଧି ପାଇଥିବା ରାଜପୁରୁଷ ଉପାଧିରେ ଭୂଷିତ କରନ୍ତି । ଏହି ଉପାଧି କବିଙ୍କ ବିଚାରରେ ଅଳୀକ । ଏହା ମୂଲ୍ୟହୀନ । ଏଥିପାଇଁ ପୁଣି ବ୍ୟକ୍ତି ବ୍ୟକ୍ତି ମଧ୍ୟରେ କଳହ ଏବଂ ଦ୍ୱନ୍ଦ୍ୱ । କବି ଏହାକୁ ବ୍ୟଙ୍ଗ କରିଅଛନ୍ତି । ଏହି ପଦ କେବଳ ସମ୍ୟକ୍ କର୍ଣ୍ଣରସାୟନ କରେ । ପଦ ଅନୁସାରେ କିଛି ବସନ ଏବଂ ଭୂଷଣ ମଧ୍ୟ ଦିଆଯାଇଥାଏ । ଏ ପୋଷାକକୁ ପୁଣି କଳଙ୍କି

ଖାଇଯାଏ ଏବଂ ଶେଷରେ ଏହା ଚୂଟିଆ ମୂଷାର ଆହାର ହୁଏ । ଏହି ହୁକସାର ଅର୍ଥାତ୍ ଅସାର ପଦପାଇଁ ଯେଉଁ ପ୍ରତିଯୋଗିତା ଦେଉଅଛୁ ସେଥି-ପାଇଁ କବି କଠୋର ସମାଲୋଚନା କରିଛନ୍ତି । ଏହି ଅସାର ପ୍ରଥାକୁ ଏ ପ୍ରସଙ୍ଗରେ କବି ଦେଖାଇ ଅଛନ୍ତି ।

(ଗ) ଉପାଧି-ଲାଲସା-ରୂପୀ ମହାବ୍ୟାଧି
ହୋଇଛୁ ସାଧୁଙ୍କ ଧରମର ବାଧା,
ଅସାର ଝଟକ ହୋଇଅଛୁ ସାର,
ଭଣ୍ଡତାର ବଢ଼ି ଯାଉଛୁ ପ୍ରସାର ।

ଏହି ପଦ୍ୟାଂଶଟି 'ଦରବାର' କାବ୍ୟର ଏକ ଅଂଶବିଶେଷ । କବିବର ରାଧାନାଥ ରାୟ ଏପ୍ରସଙ୍ଗରେ ଉପାଧି-ଲାଲସା-ରୂପକ ମହାବ୍ୟାଧିକୁ ବ୍ୟଙ୍ଗ କରି ଅଛନ୍ତି—

ରାଧାନାଥ ତତ୍କାଳୀନ ସମାଜର ନଗ୍ନଚିତ୍ରକୁ ଏପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି । ଉପାଧି ପାଇଁ ପରସ୍ପର ମଧ୍ୟରେ ପ୍ରବଳ ପ୍ରତିଯୋଗିତା । ଏହି ଲାଲସା ମହାବ୍ୟାଧି ବଳି ବ୍ୟାପିଯାଇଛୁ । ତେଣୁ ଏହା ସାଧୁଙ୍କ ଧର୍ମର ପ୍ରତିବାଧା ହୋଇଛୁ । ଆଜିର ସମାଜରେ ଯାହା ଅସାର ତାହାହିଁ ସାର ଏବଂ ଯାହା ଗୁଣହୀନ ତାହାହିଁ ଗୁଣବାନ ଭାବରେ ବିବେଚିତ ହେଉଛୁ । ସଙ୍ଗେ ଅଜି ଅସାଧୁତା, ଭଣ୍ଡତା, ସତ୍ୟ ଅଜି ଆତ୍ମଗୋପନ କରୁଛୁ । ନ୍ୟାୟ ଆଜି ଦୂରେଇ ଯାଇଛୁ । ଉପାଧି ଆଶାରେ ତେଣୁ ଆଜି ଚାଲିଛୁ ଷୋଡ଼ଶ ଉପଚାରରେ ମଣିଷର ପୂଜା। ପଦପାଇଁ ଆଜି ଲୋକେ ଲାଳାୟିତ ହୋଇ ମନୁଷ୍ୟକୁ ତୁଷ୍ଟ କରିବାପାଇଁ ପ୍ରତିଯୋଗିତା କରୁଛନ୍ତି । କବି ଏହିଭଳି ଚିନ୍ତାପ୍ରତି ତୀବ୍ର ସାଷ୍ଟାଙ୍ଗ କରିଛନ୍ତି। ମନୁଷ୍ୟ ଅର୍ଚ୍ଚନାଲାଗି ଆଜି ବ୍ୟକ୍ତି ଯତ୍ନ ସହକାରେ ପୁଷ୍ପବାଟିକା ରଚନା କରୁଛୁ । ମାଳି ଦେବୀ ପୂଜାପାଇଁ ଫୁଲ ତୋଳିନେଲେ ତାକୁ କୋରମାନା ଦେବାକୁ ହେଉଛୁ । ଏହି ମନୋଭାବକୁ କବି ରାଧାନାଥ ଗଭୀର ଭାବରେ ବିଦ୍ରୂପ କରିଛନ୍ତି ।

(ଘ) ମୋତେ ଦେଖି କିଏ ନ ଭଜେ କମ୍ପକୁ ?
କିଏ ନ ଡରଇ ହତ୍‌ଫଣିଟମ୍ଫକୁ ?

ଶଂସିତ ପଦ୍ୟାଂଶଟି ରାଧାନାଥଙ୍କର ବ୍ୟଙ୍ଗ କାବ୍ୟ 'ଦରବାର'ରୁ ଆନୀତ ହୋଇଛି । କବି ଏ ପ୍ରସଙ୍ଗରେ ପୋଲିସ କର୍ମଚାରୀମାନଙ୍କୁ ବିଦ୍ରୂପ କରି ଲେଖିଛନ୍ତି —

ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ସଜ୍ଜିତ ମଞ୍ଚପାଶରେ ଆସନ ପାଇଁ କଳହ ଲାଗିଥାଏ। କିଏ କେଉଁଠାରେ ବସିବ ? ପ୍ରତ୍ୟେକଙ୍କମଧ୍ୟରେ ଅଧିକାର ବଢ଼ିଛି । ତତ୍କାଳୀନ ସମାଜରେ ପୋଲିସ କର୍ମଚାରୀ ଥିଲେ ଭୟର ପ୍ରତୀକ । ଏବେ ମଧ୍ୟ ଏହି ଭାବନା ଦୂର ହୋଇ ନାହିଁ । ଏବେ ମଧ୍ୟ ନାଲି ପଗଡ଼ିକୁ ଦେଖିଲେ କିଏ ଡରେ ନାହିଁ ? ପୋଲିସ ବିନାମେଘରେ ବଜ୍ରପାତ କରିପାରେ । ତାର ପ୍ରତାପରେ ଦୋଷୀ ନିର୍ଦ୍ଦୋଷ ସମସ୍ତେ ଥରହର । ଦୁଃଖୀ ରଙ୍କୀ, କୋଟିପତି ସମସ୍ତେ ତାକୁ ଡରନ୍ତି । ପୋଲିସକୁ ଦେଖିଲେ ଦେହରେ କମ୍ପ ଆସେ । ସତେ ଯେପରି ସେ ହୋଇଛି ଉତ୍ଫଣ ଫଣୀ । ବିଷଧର ଫଣୀକୁ ଲୋକେ ଯେପରି ଭୟ କରନ୍ତି ପୋଲିସକୁ ମଧ୍ୟ ସେହିଭଳି ଭୟ କରନ୍ତି । ତେଣୁ ତା'ଠାରୁ ସେ ଦରବାରରେ କେହି ବଡ଼ ନାହାଁନ୍ତି । ଅତଏବ ସେ ସର୍ବୋଚ୍ଚ ଆସନ ପାଇବା ପାଇଁ ହକଦାର । ରାଧାନାଥ ଏପ୍ରସଙ୍ଗରେ ପୋଲିସକର୍ମଚାରୀଙ୍କୁ ବୌଦ୍ଧିକ ବ୍ୟଙ୍ଗ କରି ଅଛନ୍ତି ।

(ଙ) ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ
ସେ ଯେଣୁ ଅଟନ୍ତି ଶିବଙ୍କର ସାପ !

ଉକ୍ତ ପଦ୍ୟାଂଶଟି 'ଦରବାର' ବ୍ୟଙ୍ଗ କାବ୍ୟରୁ ଉଦ୍ଧୃତ । କବିବର ରାଧାନାଥ ରାୟ ଏପ୍ରସଙ୍ଗରେ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ବ୍ୟଙ୍ଗକରି ଲେଖିଛନ୍ତି ।

ଦରବାରରେ ମଞ୍ଚ ନିକଟରେ ଆସନପାଇଁ ପ୍ରତିଯୋଗିତା ଲାଗିଥାଏ । ପ୍ରତ୍ୟେକ ପ୍ରତ୍ୟେକଙ୍କ ଆସନପାଇଁ ବ୍ୟସ୍ତ ହେଉଥାନ୍ତି । ଉଚ୍ଚପଦସ୍ଥ କର୍ମଚାରୀ-ମାନଙ୍କର ଚାକରମାନେ ମଧ୍ୟ ସେମାନଙ୍କର ଆସନ ପାଇଁ ଲାଳାୟିତ । କବି ସେମାନଙ୍କୁ ଚମତ୍କାରଭାବରେ ସାଟାୟାର କରିଛନ୍ତି । ଗରୁଡ଼ ସର୍ପମାନଙ୍କୁ ଭକ୍ଷଣ କରେ । ତେଣୁ ସର୍ପମାନେ ଗରୁଡ଼କୁଭୟ କରନ୍ତି । କିନ୍ତୁ ଯେଉଁ ସର୍ପମାନେ ଶିବଙ୍କ ପାଖରେ ଥାଆନ୍ତି ସେମାନେ ଗରୁଡ଼କୁ ଖାତିର କରନ୍ତି ନାହିଁ । ସେହିଭଳି ଯେଉଁ ଚାକରମାନେ ବଡ଼ ବଡ଼ କର୍ମଚାରୀମାନଙ୍କ ପାଖରେ ଥାଆନ୍ତି ସେମାନେ ଅନ୍ୟମାନଙ୍କ ଉପରେ ପ୍ରତାପ ଦେଖାନ୍ତି । କବି ଏପ୍ରସଙ୍ଗରେ ଚମତ୍କାର ସାଟାୟାର କରି ଅଛନ୍ତି ।

*

(ଚ) ମଣ ଚିନ୍ତା ଆପଣାକୁ ବଡ଼କର
ମାତ୍ର କଥା—ବୃଷ ଦେହେ ମଶା ପର
ମହୀରେ କାହାର ପ୍ରବେଶ ପ୍ରସ୍ଥାଣେ
ଓଜନ ଉଶ୍ୱାସ ମହୀତ ନ ଜାଣେ !

ଶଂସିତ ପଦ୍ୟାଂଶଟି କବିବର ରାଧାନାଥ ରାୟଙ୍କ ଦ୍ୱାରା ବିରଚିତ 'ଦରବାର' କାବ୍ୟରୁ ଉଦ୍ଧୃତ ହୋଇଅଛି । କବି ଏପ୍ରସଙ୍ଗରେ ଅହମିକାଗ୍ରସ୍ତ ବ୍ୟକ୍ତିମାନଙ୍କୁ ବ୍ୟଙ୍ଗ କରି ଲେଖି ଅଛନ୍ତି ।

ମଣିଷ ମନେକରେ ନିଜକୁ ଖୁବ୍ ବଡ଼ । ଅହମିକାର ସେ ଆସ୍ଫାଳନ କରେ । ନିଜକୁ ସବୁଠାରୁ ଶ୍ରେଷ୍ଠ ବୋଲି ବିବେଚନାକରେ । ମାତ୍ର ସେ ନିହାତି କ୍ଷୁଦ୍ର । ବୃଷ ଦେହରେ ମଶା ବସି ଯେପରି ନିଜକୁ ଖୁବ୍ ବଡ଼ ମନେ କରେ ଠିକ୍ ସେହିପରି ଏହି ଅହଂଭାବାପନ୍ନ ବ୍ୟକ୍ତିମାନେ । ବିରାଟ ଏଇ ବିଶ୍ୱ ନିକଟରେ ମଣିଷ କେତେ ତୁଚ୍ଛ, କେତେ ନଗଣ୍ୟ । ମଣିଷ ଜନ୍ମ ହୁଏ ପୁଣି ମୃତ୍ୟୁଲୀଳା ସମ୍ବରଣ କରେ । ମାତ୍ର ଏକଥା କ'ଣ ପୃଥିବୀ ଜାଣେ । ତା' ପକ୍ଷରେ ଓଜନ ଓ ଉଶ୍ୱାସ ମୂଲ୍ୟହୀନ । କବି କୌଶଳାକ୍ରମେ ଦରବାର ନିକଟରେ କଳାହରତ ମଣିଷର ଆତ୍ମବଡ଼ିମାକୁ ଏହାର ମାଧ୍ୟମରେ କଠୋର ବିଦ୍ରୂପ କରିଛନ୍ତି ।

(ଛ) ଜଣେ ଜଣେ ଗୋଟି ଗୋଟିଏ ସୁଆଙ୍ଗ,
ଚୁଲିଯିବ ଭବ ଲୀଳା ହେଲେ ସାଙ୍ଗ,
ସବେଁ ଯିବ ଭାଇ ଉଭେଇ ଅଚିରେ
ବୁଦ୍ ବୁଦ ପରାୟେ ଏହି ନଦୀନୀରେ ।

ଶଂସିତ ପଦ୍ୟାଂଶଟି ରାଧାନାଥଙ୍କର 'ଦରବାର' କାବ୍ୟରୁ ଉଦ୍ଧୃତ । ଏପ୍ରସଙ୍ଗରେ କବି ସଂସାର—ରଙ୍ଗମଞ୍ଚ କଥା ବର୍ଣ୍ଣନା କରିଛନ୍ତି ।

କବିଙ୍କ ବିଚାରରେ ଏ ସଂସାର ଗୋଟିଏ ବିରାଟ ରଙ୍ଗମଞ୍ଚ । 'This world is a stage' ଏହି ରଙ୍ଗମଞ୍ଚରେ ପ୍ରତ୍ୟେକ ଜଣେ ଜଣେ ଅଭିନେତା ଓ ଅଭିନେତ୍ରୀ । ଲୀଳା ସରିଗଲାପରେ ଜଣକ ପରେ ଜଣେ ଏହି ରଙ୍ଗମଞ୍ଚରୁ ବିଦାୟ ନେଇ ଯିବେ । ଭବଲୀଳା ଶେଷହେବ । ସମସ୍ତେ ଉଭେଇ ଯିବେ । ନଦୀର ଜଳରେ ବୁଦ୍ ବୁଦ ଭଳି ସମସ୍ତେ ଲୀନ ହୋଇ

ଯିବେ । ମଣିଷର ବୃଥା ଗର୍ବଦମ୍ଭ ଅହଙ୍କାର ସବୁ ଲୋପ ପାଇଯିବ । କବି ତେଣୁ ଚେତାବନୀ ଶୁଣାଇଛନ୍ତି କ୍ଷମତା ଲାଳସୀ ତଥା ଉପାଧିଲାଳସୀ ବ୍ୟକ୍ତିମାନଙ୍କୁ ।

(ଜ) ମର୍ତ୍ତ୍ୟପଡ଼ି କାନ୍ଦି ଲୋଡ଼ ଦୁଧ ଥୋଡ଼ା,
ଯିବା ବେଳେ ଚୁଅଖଣ୍ଡି କାଠ ଲୋଡ଼ା
ମଧ୍ୟେ କେତେଦିନ ମାତର କୁଣିଆ,
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆ ।

ଉକ୍ତ ପଦ୍ୟାଂଶଟି 'ଦରବାର' କାବ୍ୟରୁ ଉଦ୍ଧୃତ । କବିଗୋଧାନାଥ ଏପ୍ରସଙ୍ଗରେ ଅହମିକାଗ୍ରସ୍ତ ବ୍ୟକ୍ତିଙ୍କୁ ଚେତାବନୀ ଶୁଣାଇ ଲେଖିଛନ୍ତି ।

ମଣିଷ ପାର୍ଥିବଭୋଗବିଳାସରେ ଉନ୍ମତ୍ତ ହୋଇ ଧରାକୁ ଶରା ବୋଲି ଜ୍ଞାନ କରେ । ମାତ୍ର ମୃତ୍ୟୁ ସମୟରେ ତା' ପାଇଁ ମାତ୍ର ଚୁ' ଖଣ୍ଡ କାଠ ଲୋଡ଼ାହୁଏ । ସେଇଥିରେ ଶୋଇ ସେ ଯାଏ ଶ୍ମଶାନକୁ । ଖଟ ପଲଙ୍କ ସ୍ୱପ୍ନହୁଏ । ମାଟିର ଘଟ ତାର ମାଟିରେ ମିଶିଯାଏ । କିନ୍ତୁ ଯେଉଁ କେତେଦିନ ସେ ଜୀବନଧାରଣ କରେ ସେଇ କେତେଦିନ ପାଇଁ ଏହି ବିଶ୍ୱର ବିଶ୍ୱର ମାଲିକ ହେବାକୁ ସେ କଳ୍ପନା କରେ । ଏହା ଯେପରି ହାସ୍ୟାସ୍ପଦ ସେହିପରି କରୁଣ ରସାତ୍ମକ । କବି ଏପ୍ରସଙ୍ଗରେ ଜୀବନର ନଶ୍ୱରତା ଏବଂ ପାର୍ଥିବ ବିଳାସର କ୍ଷଣଭଙ୍ଗୁରତା ସମ୍ପର୍କରେ ଆଲୋଚନା କରିଅଛନ୍ତି ।

(ଝ) କରଇ ସେ କେତେ ରଙ୍ଗେ କେତେମଜା,
ବସାଇ ଦିଅଇ ରାଜାପରେ ପ୍ରଜା,
ବାଗୀଶ ଉପରେ ବସାଏ ବାଳିଶ,
ଦାବାର ଉପରେ ବସାଏ ସଇସ,

ଉକ୍ତ ପଦ୍ୟାଂଶଟି କବିବର ଗୋଧାନାଥଙ୍କର 'ଦରବାର' କାବ୍ୟରୁ ଉଦ୍ଧୃତ ହୋଇଅଛି । ଏ ପ୍ରସଙ୍ଗରେ କବି ଚାଟୁସ୍ପୃତ ପାର୍ଶ୍ୱର କଚିମତ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି ।

ମଣିଷ ତୋଷାମଦ କରି ମଣିଷର ଦରବାରରେ ସମ୍ମାନିତ ହୋଇପାରେ । ମାତ୍ର ଯମ ଦରବାରରେ ସେ ସମ୍ମାନିତ ହୋଇ ନପାରେ ।

ଚିରସ୍ଥାୟୀ କର୍ତ୍ତବ୍ୟ ପାଞ୍ଜି କାର । ତା' ପକ୍ଷରେ ସାନବଡ଼ ପାତର ଅନ୍ତର ନାହିଁ । ତା' ନିକଟରେ କଳା, ଧଳା, ଜେତା ବିଜେତା ସବୁ ସମାନ ।

ତାର ବିଚାର ପୁଣି ଅଦ୍ଭୁତ, ସେ କେତେବେଳେ ରାଜା ଉପରେ ପ୍ରଜାକୁ, ମୂର୍ଖ ଉପରେ ପଣ୍ଡିତକୁ; ସବାର ଉପରେ ସଇସକୁ, ବଳବାନ୍ ଉପରେ ଦୁର୍ବଳକୁ ସୁନ୍ଦର ଉପରେ ଖୁସ୍ତି ତକୁ ଜେତା ଉପରେ ବିଜିତକୁ, ସିଂହ ଉପରେ ଶଶାକୁ, ଜଜଉପରେ ଆସାମୀକୁ, ବ୍ରାହ୍ମଣ ଉପରେ ଚଣ୍ଡାଳକୁ ବସାଇ ଦିଏ । ତାକୁ ପ୍ରତାରଣା କରିପାରିବେ ନାହିଁ । ସେ ଟିକିନିଖି ଭାବରେ ପ୍ରତ୍ୟେକଙ୍କର କାଗଜପତ୍ର ପରୀକ୍ଷା କରେ । ତେଣୁ କବି କଳାତ୍ମକ ଭାବରେ ଅନାସକ୍ତ କାଳର ବିଚାର ବିଷୟରେ ଏ ପ୍ରସଙ୍ଗରେ ବର୍ଣ୍ଣନା କରି କ୍ଷମତା ମଦ-ମତ୍ତ ବ୍ୟକ୍ତିମାନଙ୍କୁ ସାବଧାନ କରିଦେଇ ଅଛନ୍ତି ।

(ଛ) ଧର୍ମନେତ୍ରେ ସାନବଡ଼ ଦୁନିଆର
ଦୂରୁଁ ସବୁସିନା ଦିଶେ ଏକାକାର,
ଧର୍ମଶୈଳେ ବସି କରନ୍ତେ නଃସଙ୍ଗ
ଦୋଇ ଦେଖ ଦୁନିଆଁ ର ନାଟରଙ୍ଗ ।

ଉଦ୍ଧୃତ କବିତାଂଶଟି 'ଦରବାର' କାବ୍ୟରୁ ଆନୀତ । କବିବର ରାଧାନାଥ ରାୟ ଏ ପ୍ରସଙ୍ଗରେ ଧର୍ମର ମହତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ ଲେଖିଅଛନ୍ତି ।

ପାର୍ଥିବ ସୁଖ ସଂବେଗ କ୍ଷଣଭଙ୍ଗୁର ଏବଂ ଏହା ଦୁଃଖର କାରଣ । ଅଧାର୍ମିକ ବ୍ୟକ୍ତି ଏହି ଅଳୀକ ସୁଖ ପଛରେ ଧାଇଁ ଥାଏ । କିନ୍ତୁ ଧାର୍ମିକ ବ୍ୟକ୍ତି ଏ କ୍ଷଣିକ ସୁଖରେ ଆକର୍ଷିତ ନହୋଇ ଶାଶ୍ୱତର ସଂଧାନରେ ବ୍ରତୀ ହୁଏ । ସେଇଥିରେ ସେ ପାଏ ଅନନ୍ଦ । ଧର୍ମର ନୟନରେ ସବୁ ସମାନ । ସାନ ବଡ଼, ଉଚ୍ଚ ନୀଚ ସବୁ ସମାନ । ଦୂରକୁ ଯେପରି ସବୁ ସମାନ ଦେଖାଯାଏ ସେହିପରି ଧର୍ମର ନୟନରେ ସମସ୍ତ ଏକାକାର ଦେଖାଯାଏ । ଉଚ୍ଚଶୈଳ-ଶିଖରରୁ ଚାହିଁଲେ ଯେପରି ମହୀସ୍ଥିତ ତୃଣ ତରୁ ସମସ୍ତ ସମାନ ଦେଖାଯାଏ ସେହିଭଳି ଧର୍ମ-ଶୈଳ ଉପରୁ ଅବଲୋକନ କଲେ ସମସ୍ତ ଦୁନିଆଁ ସମାନ ଦେଖାଯାଏ । ତେଣୁ କବି ଉପଦେଶ ଦେଇ ଲେଖି-

ଛନ୍ତିଯେ ଧର୍ମ ଶୈଳ ଉପରେ ଉପବେଶନ କରି ନିଃସଙ୍ଗ ହୋଇ ଏହି ଜଗତରେ କ୍ଷଣିକ ନାଟରଙ୍ଗ ଉପଭୋଗ କରିବାପାଇଁ । ଧର୍ମହିଁ ମଣିଷକୁ ଏକମାତ୍ର ଶାନ୍ତି ଦେଇପାରେ । ଏକଥା ରାଧାନାଥ ଏ ପ୍ରସଙ୍ଗରେ ସୂଚାଇ ଅଛନ୍ତି ।

---

(୫) ଦେଇଥିବ ତହିଁ ମୋ ଶବଶୂଆଇ
ବେଦନପାଶେ ବେନି କରକୁ ଝୁଲାଇ,
ଯା' ଦେଖି ଜାଣିବେ ଜଗତେ ସମସ୍ତେ,
ଆସିଥିଲି ଫେରିଗଲି ଶୂନ୍ୟହସ୍ତେ ।

ଉକ୍ତ ପଦ୍ୟାଂଶଟି କବିବର ରାଧାନାଥଙ୍କର 'ଦରବାର' କାବ୍ୟରୁ ଆନୀତ । କବି ଏ ପ୍ରସଙ୍ଗରେ ଦିଗବିଜୟୀ ସିକନ୍ଦରଙ୍କ କଥା ଉଲ୍ଲେଖ କରି ବୃଥା ଅହମିକାକୁ ତ୍ୟାଗ କରିବା ପାଇଁ ଉପଦେଶ ଦେଇ ଅଛନ୍ତି ।

ବିଶ୍ୱବିଜୟୀ ସିକନ୍ଦର ନିଜର ଶକ୍ତିରେ ବିଶ୍ୱାସକରି ଦେଶପରେ ଦେଶ ଜୟ କରିବାକୁ ଲାଗିଥିଲେ । ମାତ୍ର ଏ ବିଜୟ ପିପାସା ବେଶିଦିନ ରହିଲା ନାହିଁ । ଯିଏ ଦିନେ କହୁଥିଲେ 'ଜିଣିବାକୁ ଆଉ ନାହିଁ' 'ଧରାଖଣ୍ଡ' ଏବଂ ଯିଏ ବିପୁଳ ମଣିମାଣିକ୍ୟର ଅଧୀଶ୍ୱର ହୋଇ ପାରିଥିଲେ ସେହି ବ୍ୟକ୍ତି ମଲାବେଳେ କହିଗଲେ ଯେ ତାଙ୍କର ହାତ ଦୁଇଟିକୁ କୋକେଇରେ କାଟି ଓଳମ୍ବାଇ ଦେବାକୁ । ଏହାର ଅର୍ଥ ହେଉଛି ସେ ଶୂନ୍ୟହସ୍ତରେ ଆସିଥିଲେ ଏବଂ ଶୂନ୍ୟହସ୍ତରେ ବିଦାୟ ନେଇ ଯାଉଛନ୍ତି । ତେଣୁ କବି ଏପ୍ରସଙ୍ଗରେ କହିବାକୁ ଚାହିଁଛନ୍ତି ଯେ ମଣିଷ ଶୂନ୍ୟହସ୍ତରେ ଏଇ ପୃଥିବୀରେ ଜନ୍ମନିଏ ଏବଂ ଶୂନ୍ୟହସ୍ତରେ ଏଠାରୁ ବିଦାୟ ନେଇ ଚାଲିଯାଏ । ତାର ପାର୍ଥିବ ଅଭିବୃଦ୍ଧି ପଛରେ ପଡ଼ି ରହେ । କବି ଏ ପ୍ରସଙ୍ଗରେ ପାର୍ଥିବ ଭୋଗ ବିଳାସର ତୁଚ୍ଛତା ପ୍ରତିପାଦନ କରିଅଛନ୍ତି ।

(ଠ) ବଡ଼ନିଷ୍ଠୁର କାଳ, ବଡ଼ ଅବିଶ୍ୱାସୀ
ତା ବୋଲି ଚିନ୍ତ ସେ ଆଚମ୍ବିତେ ଆସି,
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ଲୁଚି ବସେ ।

ସଂସିକ୍ତ ପଦ୍ୟାଂଶଟି କବିବର ରାଧାନାଥଙ୍କର 'ଦରବାର' କାବ୍ୟରୁ ଅଂଶିତ । କବି ଏ ପ୍ରସଙ୍ଗରେ ଅନାସକ୍ତ କାଳ ସମ୍ବନ୍ଧରେ ଚେତାବନୀ ଶୁଣାଇଛନ୍ତି ।

ମଣିଷ ପାର୍ଥିବ ସୁଖ ସଂଭୋଗକୁ ଜୀବନରେ ଏକାନ୍ତ କାମ୍ୟ ମନେକରି କାଳ ପ୍ରତି ଭ୍ରୂକ୍ଷେପ କରେନାହିଁ । ମାତ୍ର ପ୍ରତି ମୁହୂର୍ତ୍ତରେ ମଣିଷର ଆୟୁ ସରିଯାଉଛି । କାଳ ବକ୍ଷରେ ସେ ସବୁ ଯେପରି ଆସ୍ତେ ଆସ୍ତେ ଲୀନ ହୋଇ ଯାଉଛି । କାଳ ହେଉଛି ନିର୍ମମ, ନିଷ୍ଠୁର । ତା ନିକଟରେ ଧନୀ ଦରିଦ୍ର, ଉଚ୍ଚନୀଚ, ଯୁବକ ବୃଦ୍ଧ ଇତ୍ୟାଦିର ପ୍ରଭେଦ ନାହିଁ । ସମସ୍ତଙ୍କୁ ସେ କବଳିତ କରେ । ସେ ବଡ଼ ଅବିଶ୍ୱାସୀ । ସେ ବଡ଼ ଆଶ୍ଚର୍ଯ୍ୟଜନକ ଭାବରେ ଉପସ୍ଥିତ ହୋଇ ଯାଏ । ସମସ୍ତଙ୍କ ଅଲକ୍ଷରେ ସେ କେତେବେଳେ ଆସି ପହଞ୍ଚିଯାଏ କେହି ଜାଣିପାରନ୍ତି ନାହିଁ । କାଳକୁ ଦୂରବର୍ତ୍ତୀ ଜାଣି ଅର୍ଥାତ୍ ମୃତ୍ୟୁକୁ ଦୂରବର୍ତ୍ତୀ ଜାଣି ଯିଏ ଉପହାସ କରେ କାଳ କେତେବେଳେ ଆସି ତାର ପଛରେ ଲୁଚିବସିଥାଏ । କବି ରାଧାନାଥ କାଳର ଏହି ସାର୍ବଭୌମ ଶକ୍ତି ସମ୍ବନ୍ଧରେ ମଣିଷ ସମାଜକୁ ଚେତାଇ ଦେଇଛନ୍ତି ଏବଂ କାଳ କବଳରୁ ମୁକ୍ତ ଲାଭ କରିବା ପାଇଁ ଧର୍ମର ପଥକୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଇ ଅଛନ୍ତି ।

(ଡ) ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି,
ଧର୍ମ ଏକାସିନା ମହତ ପଣିଆ
ଅନ୍ୟ ବଡ଼ପଣ ଅଟଇ ଦାନିଆ

ଶଂସିତ ପଦ୍ୟାଂଶଟି କବିବର ରାଧାନାଥ ରାୟଙ୍କ ଦ୍ୱାରା ରଚିତ 'ଦରବାର' କାବ୍ୟରୁ ଉଦ୍ଧୃତ ହୋଇଅଛି । କବି ଭୌତିକ ଅଭିବୃଦ୍ଧିର ଅସାରତା ଦେଖାଇ କାଳ କବଳରୁ ମୁକ୍ତ ଲାଭ କରିବା ପାଇଁ ଧର୍ମର ମହତ୍ତ୍ୱ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି ।

ମଣିଷର ଜୀବନ କ୍ଷଣ ଭଙ୍ଗୁର । ତାର ପାର୍ଥିବ ଭୋଗ ବିଳାସ ମଧ୍ୟ କ୍ଷଣିକ । କାଳ ବକ୍ଷରେ ସେ ଲୀନ ହୋଇଯାଏ ସବୁଦିନ ପାଇଁ ମାତ୍ର ବଞ୍ଚି ରହେ ତାର ମଣିଷପଣିଆ । ଏହି ମଣିଷପଣିଆ ଧର୍ମ ଭାବରେ ଅନୁପ୍ରାଣିତ ହେବା ଉଚିତ । ସଂସାର-ସାଗର ଭୀଷଣ ଏବଂ ଭୟଙ୍କର । ଏଠି କେତେ-ବେଳେ ଜୀବନ ନୌକା ନିମଜ୍ଜିତ ହୋଇଯିବ କେହି କହି ପାରିବେ ନାହିଁ । ସ୍ୱୟଂ ଭଗବାନ ଧର୍ମରୂପକ ପୋତ ଗଢ଼ିଛନ୍ତି ଏହି ସଂସାର ରୂପକ ପାରାବାରକୁ ପାରି ହେବାପାଇଁ । ଧର୍ମହିଁ ଏକମାତ୍ର ମହାନ । ମଣିଷର ଆତ୍ମ ବଡ଼ିମା ଧର୍ମ ନିକଟରେ ତୁଚ୍ଛ । ଯେଉଁ ବଡ଼ପଣ ପୁଷ୍ପର ସୌରଭ ଭଳି ସବୁଦିନ ଚହଟୁଥାଏ ତାକୁ କେହି ଛଡ଼ାଇ ନେଇ ପାରେ ନାହିଁ । ସାଂସାରିକ ଲାଳସାକୁ ତ୍ୟାଗ କରି ଧର୍ମାନୁପ୍ରାଣିତ ହେବା ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ ହେବା ଉଚିତ । କବି ରାଧାନାଥ ଏଥିପାଇଁ ଏ ପ୍ରସଙ୍ଗରେ ଧର୍ମର ମହତ୍ତ୍ୱ ଓ ଗୌରବ ଗାନ କରି ଅଛନ୍ତି ।

(ଚ)            ଶୂଷ୍କବନ୍ଧ୍ୟ ଯଶ ସଙ୍ଗେ ଅର୍ଦ୍ଧାଶନ
               ପ୍ରତିଭାର ପରା ଲଲାଟ-ଲେଖନ ।

ଉକ୍ତ ପଦ୍ୟାଂଶଟି ରାଧାନାଥଙ୍କର 'ଦରବାର' କାବ୍ୟରୁ ଆନୀତ । କବି ଏ ପ୍ରସଙ୍ଗରେ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ଦୁର୍ଦ୍ଦଶା ସମ୍ବନ୍ଧରେ ଆଲୋଚନା କରିଛନ୍ତି ।

ଉତ୍କଳର ପ୍ରଥିତ ଯଶା ଜ୍ୟୋତିର୍ବିଦ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହା-ମହୋପାଧ୍ୟାୟ ଉପାଧିରେ ଭୂଷିତ କରାଯାଇଥିଲା । କବି ରାଧାନାଥଙ୍କୁ କିନ୍ତୁ ଏହା ଭଲ ଲାଗି ନ ଥିଲା । ସେ ନିଜ ପ୍ରତିଭାରେ ପ୍ରତିଭାବାନ । ତାଙ୍କୁ

ମଣିଷ ପ୍ରଦତ୍ତ ଉପାଧି ମହ୍ତ୍ୱାନ୍ କରି ନ ପାରେ । ସାମନ୍ତ ଚନ୍ଦ୍ରଶେଖର ଜୀବନବ୍ୟାପି କଠୋର ସାଧନା କରିଥିଲେ ଜ୍ୟୋତିଷ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ପାଇଁ ବଳେ ଅର୍ଦ୍ଧାଶନ ହୋଇ ମଧ୍ୟ ସାଧନା କ୍ଷେତ୍ରରୁ ଅପ୍ୟାହୃତ ନେଇ ନାହାନ୍ତି । ଦାରିଦ୍ର୍ୟର କଶାଘାତ ଓ ପାରିବାରିକ କଳହ ତାଙ୍କୁ ଲକ୍ଷ୍ୟଚ୍ୟୁତ କରିପାରି ନାହିଁ । ଏହିପରି ଯୁଗେ ଯୁଗେ ଏବଂ ସର୍ବଦେଶରେ ସତ୍ୟ ଯେ ପ୍ରତିଭାଶାଳୀ ବ୍ୟକ୍ତିମାନେ କେବଳ ଶୁଖିଲା ଯଶ ଲାଭ କରନ୍ତିମାତ୍ର ପେଟପୂରି ଖାଇବାକୁ ପାଆନ୍ତି ନାହିଁ । ସାମନ୍ତ ଚନ୍ଦ୍ରଶେଖରଙ୍କର ଦାରିଦ୍ର୍ୟ ନିପୀଡ଼ିତ ଜୀବନକୁ ବିଚାରକୁ ନେଇ କବି ଏଭଳି ମନ୍ତବ୍ୟ ପ୍ରକାଶ କରି ଅଛନ୍ତି ।

(ଣ) ମେ ତିମୂଲ୍ୟ କାହୁଁ ଜାଣିବ ଶବର ?
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର ।

ଉକ୍ତ ପଦ୍ୟାଂଶଟି କବିବର ରାଧାନାଥଙ୍କ ଦ୍ୱାରା ରଚିତ 'ଦରବାର' କାବ୍ୟରୁ ଆନୀତ । କବି ଏ ପ୍ରସଙ୍ଗରେ ସାମନ୍ତଚନ୍ଦ୍ରଶେଖରଙ୍କ ପ୍ରତି ଯଥୋଚିତ ସମ୍ମାନ ଦିଆଯାଇ ନଥିବା ହେତୁ କ୍ଷୋଭ ପ୍ରକାଶ କରି ଲେଖିଛନ୍ତି ।

ସାମନ୍ତଚନ୍ଦ୍ରଶେଖର ଜ୍ୟୋତିର୍ବିଦ୍ୟାରେ ପ୍ରବୀଣ ଥିଲେ । ତାଙ୍କର ସିଦ୍ଧାନ୍ତଦର୍ପଣ ତାଙ୍କୁ ଯୁଗେ ଯୁଗେ ଗୌରବାନ୍ୱିତ କରୁଥିବ । କିନ୍ତୁ ଓଡ଼ିଶାରେ ତାଙ୍କୁ ସମ୍ମାନ ମିଳିଲା ନାହିଁ । ବରଂ ସେ ଦାରିଦ୍ର୍ୟ ନିପୀଡ଼ିତ ଜୀବନ ଯାପନ କରିଥିଲେ । ତାଙ୍କର ପ୍ରତିଭାକୁ ଏ ଜାତି ଚିହ୍ନିଲା ନାହିଁ । ଏଥିପାଇଁ ତାଙ୍କ ପ୍ରତି ଅନାଦର ଭାବ । ଶବର ମୋତିର ମୂଲ୍ୟ ଜାଣେ ନାହିଁ । ତେଣୁ ସେ ମୋତିକୁ ଫିଙ୍ଗି ଦେଇ କାଇଁଚରେ ଆଦର କରେ । ମୋତିକୁ ପରିଧାନ ନ କରି କାଇଁଚକୁ ପରିଧାନ କରେ । ଠିକ୍ ଏହିପରି ଦଶା ହୋଇଛି ସାମନ୍ତ ଚନ୍ଦ୍ରଶେଖରଙ୍କ ଭାଗ୍ୟରେ । ସେ ମୋତି ହୋଇ ମଧ୍ୟ କାଇଁଚ ଦଶା ପାଇଛନ୍ତି । ସେଥିପାଇଁ ସେ ଅବହେଳିତ ହୋଇଛନ୍ତି । ମାତ୍ର କବି ରାଧାନାଥ ଥିଲେ ତାଙ୍କର ଗୁଣଜ୍ଞ । ସେ ତାଙ୍କୁ ପ୍ରବୋଧନା ଦେଇଛନ୍ତି ।

---